ପ୍ରତିଷ୍ଠାତା - ରାମକୃଷ୍ଣ ନନ୍ଦ



ଉପଦେଷ୍ଟାମଣ୍ଡଳୀ

**ଶ୍ରୀ ସହଦେବ ସାହୁ**
**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**
**ଇଂ ପ୍ରଭାତ କୁମାର ନନ୍ଦ**

ସମ୍ପାଦିକା
**ଅନସୂୟା ନନ୍ଦ**



**୭୦ ବର୍ଷ, ଦଶମ/ଏକାଦଶ ସଂଖ୍ୟା**

**ମଇ-ଜୁନ, ୨୦୨୦**

**ବାର୍ଷିକ ମୂଲ୍ୟ--୧୪୦ ଟଙ୍କା**
**ପ୍ରତିଖଣ୍ଡ-- ୧୬ ଟଙ୍କା**

ଯୋଗାଯୋଗ
**ତଳତେଲେଙ୍ଗା ବଜାର, କଟକ-୭୫୩୦୦୯**
ଦୂରଭାଷ : ୯୮୬୧୦୬୪୮୯୧, ୯୬୬୭୩୨୬୫୬୩, ୦୬୭୧-୨୪୨୦୦୬୫
email :
nandaanasuya@hotmail.com
www:odisha publication.com

ଅନ୍ୟାନ୍ୟ ବିଭାଗରେ ଲେଖକ
**ରବି ନାରାୟଣ ମହାପାତ୍ର, ଇଂ ଆର୍.ପି. ଦାସ, ଡା. ସୂର୍ଯ୍ୟ.ଏନ୍. ଦାସ, ଶତ୍ରୁଘ୍ନ ପଟ୍ଟନାୟକ, ଲୀନା ଦାଶ**

### ଗଳ୍ପ ଓ ଜୀବନୀ



### କବିତା



### ଜ୍ଞାନବିଜ୍ଞାନ



### ମନୋରଞ୍ଜନ



# ଆମ ଚିଠି ମୁଣିରୁ

**ଆନନ୍ଦପୁର, କେନ୍ଦୁଝରରୁ ଶ୍ରୀରବୀନ୍ଦ୍ର ପ୍ରସାଦ ଚାନ୍ଦ–**
ଅପ୍ରେଲ ମାସର ପତ୍ରିକା ପାଇ ବହୁତ ଖୁସି ଲାଗିଲା ।

ଜଣେ ସାଧକ ଯେତେବେଳେ ହୁଏ ନିର୍ବିକାର,
ଠିକ୍ ସେତେବେଳେ 'କରୋନା'ରେ ମିଳେ
ସେବା ସାଧନାର ଉପହାର ।
'ସଂସାର' ପତ୍ରିକା ଜାଗ୍ରତ ସଂସାର ପାଇଁ
କରୋନା ଭୂତାଣୁ ବାଟ ଛେକିଦେଲା ତୁଳନା ନାହିଁ
ତଥାପି ରହିଛି ଆଶାର ସକାଳ
ବାଣ୍ଟିଦେବାପାଇଁ ସତ୍ୟ-ଧର୍ମ-ଶାନ୍ତି ସଂକଳ୍ପ ନେଇ ।



**'କରୋନା'ର କରାଳ ଛାୟା ସମଗ୍ର ଜଗତକୁ ସ୍ଥିର କରିଥିବାବେଳେ 'ସଂସାର' ମଧ୍ୟ ଏଥିରୁ ବାଦ୍ ପଡ଼ିନାହିଁ । ଡାକ ବ୍ୟବସ୍ଥା ଗୁରୁତର ସଙ୍କଟର ସମ୍ମୁଖୀନ ହେବାରୁ ଏହି ପତ୍ରିକାଟିର ଗତି ମଧ୍ୟ ବନ୍ଦ କରିବାକୁ ଆମେ ବାଧ୍ୟ ହେଉଛୁ । ତେଣୁ ମେ ଓ ଜୁନ୍– ଏ ଦୁଇ ମାସ ପାଇଁ ଏକକ ପତ୍ରିକା ପ୍ରକାଶ କରିବାକୁ ଯାଉଛୁ । ଆଶାକରେ, ଆମର ସହୃଦୟ ପାଠକ, ଏଜେଣ୍ଟ ଓ ଲେଖକସମୂହ ଆମକୁ ଏଥିପାଇଁ ସହଯୋଗ କରିବେ ।**

–ସମ୍ପାଦିକା







ବିଭୁପ୍ରସାଦ ସାହୁ (୪ର୍ଥ), ବିବେକାନନ୍ଦ ଶିକ୍ଷାକେନ୍ଦ୍ର, ବେଲବାହାଲୀ, କେନ୍ଦୁଝର

**ଏ ମାସର ପ୍ରଚ୍ଛଦ ଓ ପ୍ରଚ୍ଛଦର ଦ୍ୱିତୀୟ ପୃଷ୍ଠାରେ 'ଅନନ୍ତ ପଦ୍ମନାଭନ୍ ସ୍ୱାମୀ ମନ୍ଦିର' ବିଷୟରୁ ଚିତ୍ର ପ୍ରଦତ୍ତ ।**

# ଆମ ସ୍ୱପ୍ନ, ତାଙ୍କ ବିଚାର

ଡାକ୍ତର ଚୌଧୁରୀ ସତ୍ୟବ୍ରତ ନନ୍ଦ

ସବୁ ସ୍ୱପ୍ନ କ'ଣ ସତ୍ୟ ହୁଏ ? କିଛି ସ୍ୱପ୍ନ ସତ୍ୟ ହୁଏ, ଆଉ କିଛ ସେହି ସ୍ୱପ୍ନରେ ହିଁ ରହିଯାଇଥାଏ । ସ୍ୱପ୍ନ ସତ୍ୟ ନହେଲେ ମଣିଷ ଦୁଃଖୀ ହୋଇପଡ଼େ, ଭାଙ୍ଗିପଡ଼େ ଏବଂ ସ୍ଥଳବିଶେଷରେ ହତାଶା ଓ ନୈରାଶ୍ୟରେ ପାଗଳ ହୋଇଯାଏ । କେହି ଭାବିପାରେ ନାହିଁ ଯେ ତାର ଗୋଟିଏ ଦ୍ୱାର ବନ୍ଦ ଥିଲେ ଅନେକ ଦ୍ୱାର ସେପଟେ ଖୋଲା ହୋଇ ରହିଛି । ଭଗବାନ ତା ପାଇଁ ଯେଉଁ ଯୋଜନାମାନ ଖଞ୍ଜି ରଖିଛନ୍ତି, ତାହା ସ୍ୱପ୍ନଠାରୁ ଭିନ୍ନ ହେଲେହେଁ ତା ପାଇଁ ଯେ ମଙ୍ଗଳକାରୀ, ଏହା ତାର କଳ୍ପନାରେ ନ ଥାଏ । ଏ ବିଷୟରେ ତେବେ ଗୋଟିଏ ଛୋଟ ଗଳ୍ପ ଶୁଣନ୍ତୁ ।



ଗୋଟିଏ ଜଙ୍ଗଲରେ ହୃଷ୍ଟପୁଷ୍ଟ ଗଛ ତିନୋଟି ସ୍ୱପ୍ନ ଦେଖିଥିଲେ । ଗୋଟିଏ ଗଛ ଭାବୁଥିଲା, ତାର କାଠରେ ସିନ୍ଦୁକଟିଏ ତିଆରି ହେବ ଏବଂ ସେଥିରେ ସୁନା, ରୁପା, ହୀରା, ନୀଳା ଇତ୍ୟାଦି ରହିବ । ଦ୍ୱିତୀୟ ଗଛଟି ଭାବୁଥିଲା, ତାର କାଠରେ ଜାହାଜ ତିଆରି ହେବ ଓ ସେଥିରେ ଦେଶର ରାଜା ଓ ରାଣୀ ବିଦେଶ ଭ୍ରମଣ କରିବେ । ତୃତୀୟ ଗଛଟି ଭାବୁଥିଲା, ସେ ତାର ଉଚ୍ଚତାରେ ଆକାଶକୁ ଛୁଇଁବ । ତାକୁ ଦେଖି ଲୋକମାନେ ସ୍ୱର୍ଗତ ଓ ଭଗବାନଙ୍କ ବିଷୟରେ ଜ୍ଞାନ ପାଇବେ ।

ଏପରି ଭାବରେ ନିଜ ନିଜର ସ୍ୱପ୍ନକୁ ବାସ୍ତବତାରେ ପରିଣତ କରିବା ପାଇଁ ଗଛ ତିନିଟି ପ୍ରାର୍ଥନା କରିବାରେ ଲାଗିଥାଆନ୍ତି । କେତେ ବର୍ଷ ଏମିତି କଟିଯିବା ପରେ କେତେକ କାଠ କଟାଳି ସେହି ଜଙ୍ଗଲରେ ପହଞ୍ଚିଲେ । ପ୍ରଥମ ଗଛକୁ ଦେଖି କହିଲେ– ଗଛଟି ସୁନ୍ଦର ହୋଇଛି ଓ ତାର କାଠରେ ବଢ଼େଇ ସୁନ୍ଦର ଘରକରଣା ଜିନିଷ ତିଆରି କରିପାରିବ । ଏକଥା ଶୁଣି ଗଛର ମନ ଖୁସି ହେଲା । ଭାବିଲା, ଯାହାହେଉ ତାର ସ୍ୱପ୍ନ ସତ୍ୟ ହେବାକୁ ଯାଉଛି । ଦ୍ୱିତୀୟ ଗଛକୁ ଦେଖି କାଠକଟାଳିମାନେ କହିଲେ– ଗଛଟି ବହୁତ ଶକ୍ତ । ଏଥିରେ ମାଛ ଧରିବା ପାଇଁ ଡଙ୍ଗାଟିଏ ତିଆର ହେଲେ ଭଲହେବ । ଗଛଟି ଏମାନଙ୍କ କଥା ଶୁଣି ଭାବିଲା ଯେ ତାର ସ୍ୱପ୍ନ ସତ ହୋଇପାରେ । କିନ୍ତୁ ଜାହାଜ ହେବା ପରିବର୍ତ୍ତେ ଛୋଟ ମାଛ ଧରା ଡଙ୍ଗା ହେବା କଥା ଶୁଣି ତାର ମନ ଅସ୍ଥିର ହେଲା । କାଠକଟାଳିମାନେ ତାକୁ ଅନେକ ସମୟ ଧରି ନିରୀକ୍ଷଣ କଲେ । କିନ୍ତୁ ଗଛଟିର ଉପଯୋଗିତାର ବିଷୟରେ କିଛି ନିଷ୍ପତ୍ତି ନେଇପାରିଲେ ନାହିଁ । ସ୍ଥିର କଲେ ଗଛଟିକୁ ସେପରି କାଟି ନେଇଯିବେ । ନିଜ ବିଷୟରେ କୌଣସି ନିର୍ଣ୍ଣୟ ଠିକ୍ ଭାବରେ ନ ଶୁଣିବାରୁ ତୃତୀୟ ଗଛଟି ମନ ଦୁଃଖ କଲା । ତା'ର ସ୍ୱପ୍ନ ଶେଷରେ କ'ଣ ହେବ ଭାବି ନ ପାରି ସବୁ ଭଗବାନଙ୍କ ଉପରେ ଛାଡ଼ି, ନିରାସକ୍ତ ଭାବରେ ପଡ଼ି ରହିଲା । ଶେଷରେ କାଠକଟାଳିମାନେ ଜଙ୍ଗଲରୁ ତିନିଟି ଗଛକୁ କାଟିନେଲେ ।

ପ୍ରଥମ ଗଛର କାଠଗୁଡ଼ିକୁ ନେଇ ବଢ଼େଇ ସେଥିରେ ଛୋଟ ପିଲା ଝୁଲିବା ପାଇଁ ଦୋଳି(ଝୁଲଣା) ଟିଏ ତିଆରି କଲା । ତାକୁ ସୁନ୍ଦର କରିବା ପଇଁ ନାନା ରକମର କାରୁକାର୍ଯ୍ୟ ଖଞ୍ଜିଦେଲା । ତାହା ଏତେ ଆକର୍ଷଣୀୟ

ହୋଇପଡ଼ିଲା ଯେ ରାସ୍ତାରେ ଚାଲିଯାଉଥିବା ଲୋକେ ଦଣ୍ଡେ ଚାହିଁ ରହୁଥିଲେ । ଗଛଟିକୁ ଅନେକ ଆତ୍ମତୃପ୍ତି ମିଳିଲା । ଭାବୁଥିଲା, ସିନ୍ଦୁକଟିଏ ହେବା ପାଇଁ ଯଦିଓ ଇଚ୍ଛା କରିଥିଲି, ଏବେ ଝୁଲଣାଟିଏ ତା'ଠାରୁ କୌଣସି ଗୁଣରେ କମ୍ ନୁହେଁ ।

ଦ୍ୱିତୀୟ ଗଛଟି କେଉଟମାନଙ୍କ ହାତରେ ପଡ଼ିଲା । ସେମାନେ ସେଥିରେ ମାଛ ଧରିବା ପାଇଁ ଡଙ୍ଗାଟିଏ ତିଆରି କଲେ । ଜାହାଜ ହେବା ପାଇଁ ଇଚ୍ଛା କରି ଶେଷରେ ଡଙ୍ଗାଟିଏ ହୋଇଥିବାରୁ ବେଳେବେଳେ ତାକୁ ନିଜକୁ ଛୋଟ ଲାଗୁଥାଏ । କେବଳ ଦୁଃଖ ଥାଏ ଯେ ରାଜାରାଣୀଙ୍କୁ ଆଉ ପାଇପାରିବ ନାହିଁ । ଏହା ଭିତରେ ଦିନେ ମାଛ ଧରିବା କାମରେ ମଝି ଦରିଆକୁ ଯାଇଥାଏ । ଅକସ୍ମାତ ଝଡ଼ତୋଫାନ ଆସିଲା । ଗୋଟିଏ ବଡ଼ ଜାହାଜ ଦୁର୍ଘଟଣାଗ୍ରସ୍ତ ହୋଇ ବୁଡ଼ିଯାଇଥାଏ । ପୁରୁଷ ଓ ସ୍ତ୍ରୀ ଦୁଇଜଣ ପାଣିରେ ଉବୁଟୁବୁ ହେଉଥାଆନ୍ତି । ଛୋଟ ଡଙ୍ଗାର କେଉଟ ପାଣିରେ ବୁଡ଼ି ଯାଉଥିବା ପୁରୁଷ ଓ ସ୍ତ୍ରୀ ଲୋକ ଦୁଇଜଣଙ୍କୁ ଉଦ୍ଧାର କରି ଛୋଟ ଡଙ୍ଗାରେ ବସାଇଲା । ସେତେବେଳେ ବଡ଼ ଜାହାଜ ସହ ଅନ୍ୟମାନେ ପାଣିରେ ବୁଡ଼ିଗଲେଣି । ଆକସ୍ମିକ ଦୁର୍ଘଟଣାରୁ ବଞ୍ଚିଯାଇଥିବା ଦୁଇଜଣ ସମୁଦ୍ର କୂଳରେ ଆସି ପହଞ୍ଚିଲେ । ସେଠାରେ ଦୁଇଜଣଙ୍କର ପରିଚୟ ପାଇଁ କେଉଟ (ନାଉରିଆ)ଟି ଅବାକ୍ ହୋଇଗଲା । ସେମାନେ ଥିଲେ ସେହି ଦେଶର ରାଜା ଓ ରାଣୀ । ଦ୍ୱିତୀୟ ଗଛର କାଠରେ ତିଆରି ହୋଇଥିବା ମାଛଧରା ଡଙ୍ଗାଟି ଆଜି ପର୍ଯ୍ୟନ୍ତ ମନ ଦୁଃଖରେ ରହି ତା'ର ଭାଗ୍ୟକୁ କେବଳ ନିନ୍ଦୁଥିଲା; କିନ୍ତୁ ଆଜି ସେ ରାଜ୍ୟର ରାଜା ଓ ରାଣୀଙ୍କର ଜୀବନ ବଞ୍ଚାଇଥିବାରୁ ନିଜକୁ ଧନ୍ୟ ମନେକଲା । ରାଜା ଓ ରାଣୀ କେଉଟକୁ ପ୍ରଚୁର ଧନରତ୍ନ ଦେଇ ଡଙ୍ଗାଟିକୁ ତା'ପାଖରୁ ନେଇଗଲେ ।

ଦ୍ୱିତୀୟ ଗଛଟି ଦୀର୍ଘକାଳ କେଉଟମାନଙ୍କ ବାଡ଼ିବଗିଚରେ ପଡ଼ି ରହିଥାଏ । ନିଜର ଭବିଷ୍ୟତ ବିଷୟରେ କିଛି ନିର୍ଣ୍ଣୟ ନେଇ ପାରି ନ ଥିବାରୁ ଭଗବାନଙ୍କୁ କେବଳ ପ୍ରାର୍ଥନା କରୁଥାଏ । ମନରେ ଆଶା ତଥାପି ରଖିଥାଏ ଯେ ସେ ଭଗବାନଙ୍କର ଦର୍ଶନ ପାଇବ । ଦିନେ ବଡ଼ି ସକାଳୁ କେତେଜଣ ଲୋକ ଆସି ଗଛଟିକୁ ଉଠାଇନେଲେ । ସେହି କାଠକୁ ଯୋଡ଼ାଯୋଡ଼ି କରି କ୍ରୁସ୍‌ଟିଏ ତିଆରି କଲେ । ସେଥିରେ ଗୋଟିଏ ଲୋକକୁ କ୍ରୁଶବିଦ୍ଧ କରି କାଠଟିକୁ ମାଟିରେ ପୋତିଦେଲେ ଏବଂ ଲୋକଟି ସେପରି ଝୁଲି ରହିଲା । ଏହି ଲୋକଟି ଥିଲେ ସ୍ୱୟଂ ଭଗବାନ ଯୀଶୁ । ହାୟରେ, ବୃକ୍ଷର ପ୍ରାର୍ଥନାର ଉତ୍ତର ଦେବାକୁ ଯାଇ ସ୍ୱୟଂ ଭଗବାନ ଆସି ଏତେ କଷ୍ଟ ସ୍ୱୀକାର କଲେ । ଏକଥା ଭାବି ଭାବି ବୃକ୍ଷଟିର ହୃଦୟ ଦ୍ରବୀଭୂତ ହୋଇ ଅନବରତ ଅଶ୍ରୁ ନିର୍ଗତ ହେବାରେ ଲାଗିଲା ।



ବାସ୍ତବରେ ସେହି ବୃକ୍ଷ ତିନିଟିଙ୍କର ସ୍ୱପ୍ନ ପରି ଆମେମାନେ ସ୍ୱପ୍ନ ଦେଖିଥାଉ । ସବୁ ସ୍ୱପ୍ନ ଆମର ଫଳବତୀ ହୋଇ ନ ଥାଏ । ଯେତେବେଳେ ଈପ୍‌ସିତ ଫଳ ନ ମିଳେ, ଆମେ ମନ ଦୁଃଖ କରୁ, ଭାଗ୍ୟକୁ ନିନ୍ଦା କରୁ ଓ ବେଳ ପଡ଼ିଲେ ଭଗବାନଙ୍କୁ ଗାଳିଦେଉ । ଆମର ଧାରଣା ନ ଥାଏ ଯେ ଭଗବାନ ଆମ ପାଇଁ ଏକ ଉନ୍ନତ ତଥା ଶକ୍ତିଶାଳୀ ଯୋଜନା ପ୍ରସ୍ତୁତ କରି ରଖିଛନ୍ତି । ✿✿

*ମିର୍ଜାପୋଖରୀ, ବାଲେଶ୍ୱର*

# ଶିଶୁଟିଏ ବୋଲି

ଶ୍ରୀ ପ୍ରଶାନ୍ତ କୁମାର ମଙ୍ଗରାଜ

ରବୀନ୍ଦ୍ରବାବୁ ଗାଆଁରେ ରହନ୍ତି । ବୟସ ପଚାଶ ଛୁଇଁଲାଣି । ମୁଣ୍ଡର ବାଳ ପାଚି ଆସିଲାଣି; ତଥାପି ରାଜଧାନୀରୁ କାମ ତୁଟୁନି । କରିବେ ଆଉ କ'ଣ ! ଗାଆଁ ବସ୍‌ରେ ରାଜଧାନୀ ବାହାରିପଡ଼ିଲେ ।

ଗାଆଁରୁ ରାଜଧାନୀ ଭାରି ଭିଡ଼ । ଥରେ ଯିଏ ବସ୍‌ରେ ଯାଇଛି; ସେ ଜାଣିଛି । କେତେ ବାଗରେ, କେତେ ରାଗରେ ଯିବାକୁ ପଡ଼େ । କେତେବେଳେ ବସ୍ ଭିତରେ ଠିଆ ଠିଆ ତ କେତେବେଳେ ଦୁଆର ପାଖରେ ଝୁଲି ଝୁଲି ଅବା କେତେବେଳେ ବସ୍ ଛାତ ଉପରେ ଚଢ଼ିଚଢ଼ି ଯିବାକୁ ପଡ଼େ । ଗାଆଁ ବସ୍‌ରେ ଭିଡ଼ ଯେମିତି, ଭଡ଼ା ବି ସେମିତି ।

ବସ୍ ଭିତରେ କଣ୍ଡକ୍ଟରର ତାଉ,ଭାଉ ଓ ଦାଉ ନ କହିଲେ ଭଲ । ଚୁଣ୍ଟି-ଚାଣ୍ଟି, ଠେଲି-ପେଲି, ହଲେଇ-ଚଳେଇ, ଆଗ-ପଛ ଚଳାଉଥିବ ଲୋକମାନଙ୍କୁ । ମଣିଷପଣିଆ ପଛେ ଚୁଲିକି ଯାଉ; ଦୁ ମାଲିକ ବଞ୍ଚିଥାଉ । ଏହି ନ୍ୟାୟରେ ନିଇତି ଗାଆଁରୁ ରାଜଧାନୀ ବସ୍ ଚାଲେ ।

ବସ୍ ଦଧିମାଛ-ଗାଡ଼ିଆ ଛକରେ ରହିଲା । ସେଠାରେ ବସ୍‌କୁ ଉଠିଲେ ଚାରିଜଣ । ହରିପ୍ରସାଦ, ତା'ର ବାପା, ଜେଜେ ଓ ଜେଜେ ମାଆ । ହରିପ୍ରସାଦ ଦଶ ବାରବର୍ଷର ପିଲା । ବସ୍ ଭିତରେ ଅଣନିଶ୍ୱାସୀ ହୋଇପଡୁଥାଏ । ଠେଲା- ପେଲା ଭିତରେ ରବୀନ୍ଦ୍ରବାବୁଙ୍କ ଉପରକୁ ଆଉଜିପଡ଼ିଲା । ସତେ ଅବା ତାଙ୍କର ସେ ଗେହ୍ଲାପୁଅ । ଯେମିତି ନଜର ପଡ଼ିଛି ରବୀନ୍ଦ୍ରବାବୁଙ୍କର, ସେମିତି ଉଠିପଡ଼ିଲେ ବସିବା ସ୍ଥାନରୁ । କହିଲେ "ଏଇଠି ବସ । ମୁଁ ଠିଆ ହୋଇପଡ଼ୁଛି ।''

ପାଖ ସିଟ୍‌ରେ ବସିଥିବା ଲୋକମାନେ ଆବାକାବା ହୋଇ ଚାହିଁଥାନ୍ତି । କିଛି ବାଟ ଗଲା । ହରିପ୍ରସାଦର ପାଖ ସିଟ୍‌ରୁ ଜଣେ ଲୋକ ଉଠି ଓହ୍ଲାଇଗଲେ । ହରିପ୍ରସାଦର ବାପା ରବୀନ୍ଦ୍ରବାବୁଙ୍କୁ ବସିବାକୁ କହିଲେ । ସେ ମନାକରି କହିଲେ, "ମାଉସୀଙ୍କୁ ବସାନ୍ତୁ ।''

ଜେଜେମା ବସିଲେ । ତା'ପର ବସ୍ ରହଣିରେ ଦୁଇଜଣ ଦୁଇଟି ସିଟ୍‌ରୁ ଉଠିଗଲେ । ଏତିକିବେଳେ ରବୀନ୍ଦ୍ରବାବୁ ଜେଜେବାପାଙ୍କୁ ଗୋଟିଏ ସିଟ୍‌ରେ ବସାଇଦେଲେ ଓ ନିଜେ ଗୋଟିଏ ସିଟ୍‌ରେ ବସିପଡ଼ିଲେ ।

ହରିପ୍ରସାଦ ବୁଝିପାରିଲା ନାହିଁ । ରବୀନ୍ଦ୍ରବାବୁ ବାପାଙ୍କୁ ସିଟ୍ ନ ଦେଇ ନିଜେ ବସିପଡ଼ିଲେ କାହିଁକି ! ହେଲେ ପଚାରିପାରିଲା ନାହିଁ । ମନକଥା ମନରେ ଗୁଣିହେଲା ।

ବସ୍ ଗଡ଼ିଲା ଆଗକୁ ଆଗକୁ । ଯିଏ ଯାହା ବସ୍ ରହଣିରେ ଓହ୍ଲାଇଲେ । ହେଲେ ହରିପ୍ରସାଦର ମନରେ ଚୁମ୍ବକ ପରି ଘଟଣାଟା ଯୋଡ଼ି ହୋଇଗଲା ।

ହରିପ୍ରସାଦ ବଡ଼ ହେଲା । ସରକାରଙ୍କର ଗୋଇନ୍ଦା ବିଭାଗରେ କାମ କଲା । ଅବସର ମିଳିଲେ ମନେ ମନେ ଖୋଜି ବୁଲିଲା ରବୀନ୍ଦ୍ରବାବୁଙ୍କୁ; ହେଲେ ପାଇଲା ନାହିଁ । ନାଆଁ, ଗାଆଁ ଠିକଣା କିଛି ଜଣାନାହିଁ । ଘଟଣାଟିକୁ ଧରି ମଣିଷ ଖୋଜିବା କ'ଣ ଏତେ ସହଜ !

ଚାକିରିରେ ଥିବାବେଳେ ଅନେକ ଖୋଜିଲେ । ଗୋଇନ୍ଦା ବିଭାଗରେ କେତେ ଗୁପ୍ତ କଥା ଖୋଜି ପାଇଛନ୍ତି । ହେଲେ ଜଣେ ଲୋକକୁ ଖୋଜି ପାଇଲେ ନାହିଁ । ପୂରା

ଅବସୋସ୍ ରହିଗଲା । ଚାକିରି ସରିଗଲା, ଅବସର ନେଲେ । ଭାବିଲେ ଆଉ ରବୀନ୍ଦ୍ରବାବୁ ବଞ୍ଚି ନ ଥିବେ ! ଘଟଣାଟି ମନରେ ଘାଣ୍ଟିହେଲା – ହେଲେ ଆଶା ଛାଡ଼ିଦେଲେ ।

ଦିନ ପରେ ଦିନ ଗଡ଼ି ଚାଲିଲା । ରବୀନ୍ଦ୍ରବାବୁଙ୍କୁ ଶହେ କୋଡ଼ିଏ ବର୍ଷ ପୂରିବାକୁ ଚାରିଦିନ ବାକି ଥାଏ । ତାଙ୍କର ଅଣ୍ଟା ନଇଁ ଦୁଇ ଆଣ୍ଠୁ ଭିତରେ ମୁଣ୍ଡ ପଶି ଯାଇଥାଏ । ଦୂରରୁ ଦେଖିଲେ ଦୁଇ ଆଣ୍ଠୁ ଓ ମୁଣ୍ଡ ମିଶି ତିନୋଟି ମୁଣ୍ଡ ପରି ଦେଖା ଯାଉଥାଏ । ତାକୁ କେହି କେହି ତିନିମୁଣ୍ଡିଆ ବୋଲି ଡାକିଲେଣି; ତଥାପି ବାଡ଼ି ଖଣ୍ଡିଏ ଧରିଛନ୍ତି । ରାସ୍ତା କଡ଼େ କଡ଼େ ଚାଲୁଛନ୍ତି । ଥୋଡ଼ାଏ ବାଟ ଯାହା ଚାଲିଆସିବା କଥା ।

ସେହି ବାଟ ଦେଇ ଗୋଟିଏ କାର୍‌ରେ ଯାଉଥିଲା ହରିପ୍ରସାଦ । ହଠାତ୍ ଅଟକିଗଲା । ମନେ ମନେ ଗୁଣି ହେଲା– "ସେଇ ଲୋକ, ଏଇ ଲୋକ ନୁହେଁ ତ !''

ସେ କାର୍‌ରୁ ଓହ୍ଲାଇପଡ଼ିଲା । ରବୀନ୍ଦ୍ରବାବୁଙ୍କ ପାଖକୁ ଗଲା । ପଚାରିଲା, ''ମଉସା ! ତୁମକୁ କେଉଁଠି ଦେଖିଲାପରି ଲାଗୁଛି ।" ଟିକିଏ ହସିଦେଲେ ରବୀନ୍ଦ୍ରବାବୁ । କହିଲେ, "ତୁମେ ଅଶୀ ବର୍ଷ ବୟସରେ ମୋତେ ଖୋଜିବୁଲୁଛ; ଅଥଚ ମୁଁ ତୁମକୁ ଚିହ୍ନିପାରିବି ନାହିଁ !''

ହରିପ୍ରସାଦ ଖୁବ୍ ଆଶ୍ଚର୍ଯ୍ୟ ହେଲା । ସତରେ ! ଇଏ ମଣିଷ ନା' ଭୂତ । ସତୁରୀ ବର୍ଷ ତଳର କଥା ମନେ ରଖିଛନ୍ତି । ତା' ସହ ସେତେବେଳର ମନର ଭାବନାକୁ ବାରି ପାରିଛନ୍ତି । ସେଦିନ ଶିଶୁଟିଏ ବୋଲି ବୁଝି ପାରୁ ନ ଥିଲି; ହେଲେ ଏବେ..... ।

ସେ ରବୀନ୍ଦ୍ରବାବୁଙ୍କୁ ପଚାରିଲେ, 'ଆପଣ ସେଦିନ ବସ୍‌ରେ ମୋତେ ସିଟ୍‌ଟିଏ ଦେଇଥିଲେ । ସେଇ ସାହାଯ୍ୟକୁ ଭୁଲି ପାରି ନାହିଁ । ଆଜି ଯାଏଁ ଖୋଜି ବୁଲୁଛି ଟିକିଏ ସାହାଯ୍ୟ କରିବା ପାଇଁ । ମନ ଖୋଲି କୁହନ୍ତୁ– ଆପଣଙ୍କୁ କ'ଣ ସାହାଯ୍ୟ କରିବି ।

ରବୀନ୍ଦ୍ରବାବୁ ହସିଲେ । କହିଲେ, "ମୋର ଖାଦ୍ୟବସ୍ତ୍ର ଓ ବାସଗୃହ ସନ୍ତୋଷଜନକ । ଚାଲିବା, ବୁଲିବା, ନିତିଦିନିଆ କାମ ତ କରିପାରୁଛି । ତା'ଛଡ଼ା ଖୋଲା ମନରେ କଥା ହୋଇପାରୁଛି । କୁହ ତ ଭଲା, ଆଉ ମୋ ପାଇଁ କ'ଣ ଲୋଡ଼ା । ହରିପ୍ରସାଦର ମୁହଁ ତଳକୁ ହୋଇଗଲା । ଜୀବନ ସାରା ସାହାଯ୍ୟ ଫେରାଇଦେବାକୁ ଘୂରି ବୁଲୁଥିବା ମଣିଷ ହଠାତ୍ ହାରିଗଲା । କଥାକୁ ବଦଳାଇ ପଚାରିଲା– ଆପଣ ମୋତେ, ମୋ ଜେଜେ ଓ ଜେଜେ ମା'ଙ୍କୁ ବସିବାକୁ ସିଟ୍ ଦେଲେ ସତ; ହେଲେ ମୋ ବାପାଙ୍କୁ ସିଟ୍ ନ ଦେଇ ନିଜେ ବସିପଡ଼ିଲେ– ଏପରି କଲେ କାହିଁକି ?

ରବୀନ୍ଦ୍ରବାବୁ କହିଲେ, "ବାବୁରେ ! ମତେ ଶହେକୋଡ଼ିଏ ପୂରିବାକୁ ଆଉ ଚାରିଦିନ ଅଛି । ମୋ ପାଖରେ ଚାରିଦିନ ରହିପାରିବ ? ସବୁ କଥା ଆପେ ଆପେ ବୁଝିଯିବ ।''

କଥାରେ ହଁ ଭରିଲା– ହରିପ୍ରସାଦ । ଦୁହେଁ ମିଶି ରବୀନ୍ଦ୍ରବାବୁଙ୍କ ଘରକୁ ଗଲେ । ସେ ତାଙ୍କୁ ଚାରୋଟି ଫୁଲଗଛ ଦେଖାଇଲେ । କହିଲେ, "ତୁମେ ଚାରିଦିନ ଫୁଲ

ଗଛରେ ପାଣିଦେବ; ହେଲେ ଦିନକୁ ଗୋଟିଏ ଗଛରେ ପାଣି ଦେବ । ତୁମ ବିଚାରରେ ଯେଉଁ ଦିନ ଯେଉଁ ଗଛରେ ପାଣି ଦେବା ଉଚିତ୍ ହେବ; ସେ ଦିନ ସେ ଗଛରେ ପାଣି ଦେବ ।

ହରିପ୍ରସାଦ ଫୁଲଗଛଗୁଡ଼ିକୁ ଦେଖିଲା । ପ୍ରଥମ ଗଛଟି ଚାରା ଅବସ୍ଥାରେ ଅଛି । ଦ୍ୱିତୀୟ ଗଛଟି ଝାଉଁଳି ଯାଇଛି । ତୃତୀୟ ଗଛଟି ଉପରୁ ଅଧା ଯାଏଁ ଶୁଖିଗଲାଣି । ଚତୁର୍ଥ ଗଛରେ କଢ଼ ହୋଇଛି ।

ସେ ବିଚାର କଲା– ପ୍ରଥମ ତିନୋଟି ଗଛରେ ପାଣି ଦେଇ ଲାଭ ନାହିଁ । ଏଇ ଚାରିଦିନ ଭିତରେ ସେ ଗଛଗୁଡ଼ିକରେ ଫୁଲ ଫୁଟିବ ନାହିଁ । ଚତୁର୍ଥ ଗଛରେ ପାଣି ଦେଲେ ଠିକ୍ ହେବ । ଚାରି ଦିନରେ ଅନେକ ଫୁଲ ଫୁଟିବ । ରବୀନ୍ଦ୍ରବାବୁ ଶହେ କୋଡ଼ିଏ ବର୍ଷରେ ପହଞ୍ଚିଲା ଦିନ କାମରେ ଲାଗିବ । ଏମିତି ଭାବି ଚାରି ଦିନ କେବଳ ଫୁଲ ଫୁଟିଥିବା ଗଛରେ ପାଣି ଦେଲା ।

ରବୀନ୍ଦ୍ର ବାବୁ ଜାଣିପାରି ଶେଷ ଦିନରେ କହିଲେ, "ଆମ ସମାଜ ଠିକ୍ ଏମିତି କରୁଛି । ଯେପରି ତୁମେ କେବଳ ଫୁଲ ଫୁଟିଥିବା ଗଛରେ ପାଣି ଦେଲ । ଯେଉଁଠୁ କିଛି ପାଇବାର ଅଛି; ସେଇଠି ଆମ ସମାଜ ଲାଖି ରହୁଛି । ଯୋଡ଼ି ହୋଇ ଯାଉଛି ! ସେଦିନ ତୁମେ ଶିଶୁଟିଏ ଥିଲ ବୋଲି ସିଟ୍ ଦେଇଥିଲି ସତ । ହେଲେ ତୁମକୁ ନୁହେଁ; ତୁମ ଶିଶୁବେଳକୁ । ଜେଜେ ମା'ଙ୍କୁ ନୁହେଁ; ମାନବ ଜାତିର ମାଆକୁ । ଜେଜେବାପାଙ୍କୁ ନୁହେଁ; ମାନବର ପିତୃପୁରୁଷଙ୍କୁ । ହେଲେ ତୁମ ବାପା ନିକିତିର କଣ୍ଟା ପରି ତୁମେ ଓ ଜେଜେ–ଜେଜେ ମା' ମଧ୍ୟରେ ଠିଆ ହୋଇଥିଲେ । ଏପଟ ସେପଟ ହେଲେ ସଂସାର ଉଜୁଡ଼ିଯିବ । ଏଣୁକରି ବାପାଙ୍କୁ ତୁମର ଠିଆ କରାଇଥିଲି ।"

ହରିପ୍ରସାଦ ବୁଝିଗଲା । ଫେରିବା ପାଇଁ ଇସାରା ଦେବାରୁ ରବୀନ୍ଦ୍ରବାବୁ କହିଲେ, "ଏଠାକୁ ତ ଆସିଛ । ଆଉ ଗୋଟିଏ କଥା ଦେଖିଯାଅ ।"

ଡାକଟିଏ ମାରିଲେ ସେ । କୁଆଡ଼େ ଥିଲେ ସାତ ଜଣ ତିନି ମୁଣ୍ଡିଆ ଆସି ପହଞ୍ଚିଗଲେ । ହରିପ୍ରସାଦ ନିଜକୁ ବିଶ୍ୱାସ କରିପାରିଲା ନାହିଁ । ରବୀନ୍ଦ୍ରବାବୁ କହିଲେ, "ଆମେ ଆଠ ଜଣ ଗୋଟିଏ ବର୍ଷରେ ଜନ୍ମ ହୋଇଛୁ । ଶହେ କୋଡ଼ିଏ ବର୍ଷ ଜୀଇଁବୁ ! କାହିଁକି ଜାଣ.......

ଏ ଗାଆଁରେ ଜଣେ ଋଷି ଥିଲେ । ସେ ଶିଶୁଟିକୁ ମଣିଷ ବୋଲି ଭାବୁଥିଲେ । କହୁଥିଲେ– ଶିଶୁଟିଏ ବୋଲି ଅବହେଳା କର ନାହିଁ । ଯିଏ କାଖରୁ ଓହ୍ଲାଇଲେ ଠିଆ ହୋଇପାରୁନି, ଠିଆ ହେଲେ ଚାଲିପାରୁନି, ଚାଲିଲେ ଝୁଣ୍ଟି ପଡୁଛି, ଝୁଣ୍ଟି ପଡ଼ିଲେ ଗୋଡ଼ ସଳଖି ପାରୁନି ଆଉ ସଳଖି ଚାଲିଲା ବେଳକୁ ପିଲାବେଳ ତା'ର ସରିଯାଉଛି; ତାକୁ ସାହାଯ୍ୟ କର । ତା'ର ଆୟୁଷ ବଢ଼ିବ । ଜଣଙ୍କର ଆୟୁଷ ବଢ଼ାଇବା ହିଁ ଜଗତରେ ଶ୍ରେଷ୍ଠ କାମ ।

ତାଙ୍କରି କଥାରେ ଗାଁ ଚାଲୁଥିଲା । ଏ ଯାଏଁ ଗାଆଁରେ ସବୁ ଲୋକ ଶହେ କୋଡ଼ିଏ ବର୍ଷ ଜୀଇଁଛନ୍ତି । ଆମ ଜନ୍ମ ବର୍ଷ ଋଷି ମରିଗଲେ; ତଥାପି ତାଙ୍କ କଥା ମନେ ପକାଇ ଗାଆଁ ଚାଲିଛି । ଦେଖାଯାଉ......... ।

ରବୀନ୍ଦ୍ରବାବୁଙ୍କ ପାଟିରୁ କଥା ନ ସରୁଣୁ ହରିପ୍ରସାଦ ତାଙ୍କ ପାଦ ତଳେ ଲମ୍ବ ହୋଇ ପଡ଼ିଗଲା । ତିନି ମୁଣ୍ଡକୁ ଛୁଇଁ ମୁଣ୍ଡିଆଟିଏ ମାରିଲାବେଳେ ତା ଆଖିରେ ଦେଖା ଯାଉଥିଲା, ତିନି ଠାକୁର– ଜଗା,ବଳିଆ ଓ ସୁଭଦ୍ରା ।

*ସା–ସାହୁପଡ଼ା, ପୋ–ଭାଟପଡ଼ା,*
*ଭାୟା–ନିରାକାରପୁର, ପୁରୀ–୭୫୨୦୧୪*



## ସବୁ ଦେଖାଯାଏ ଏଇଠି

ଶ୍ରୀ ଅଭୟ କୁମାର ଜେନା

ଏଇ ମନେ ଯେତେ ଭରି ରହିଅଛି
ସେନେହ ସରାଗ ଆଦର,
ଛଳନା କପଟ ପରନିନ୍ଦା ପୁଣି
କାହାପାଇଁ ବିଷ ଜହର ।
ନୂଆ ଆଶାନେଇ ସକାଳ ସୂରୁଯ
ବିଞ୍ଚିଦିଏ ତା'ର କିରଣ
ଅଦିନ ବାଦଲ ଢାଙ୍କିଦେଇ ତାକୁ
କରିବାକୁ ଚାହେଁ ନିଉନ ।

ସବୁ ଦେଖାଯାଏ ଏଇଠି,
ଭଲ ଆଉ ମନ୍ଦ ସୁଖ ଅବା ଦୁଃଖ
ଫେଣ୍ଟାଫେଣ୍ଟି ମିଳେ ଯେଉଁଠି ।

କିଏ ସାଉଁଟୁଛି କାଠି କୁଟା ଏଠି
କିଏ ବିଞ୍ଚିଦିଏ ଆହାର,
ମିଛ ପିଚ୍ଛାକରି କୋଟିପତି କିଏ,
ସତ କହି ମିଳେ ପାହାର ।
ପରଧନ ଲୁଟି ଆନ ତଣ୍ଟିକାଟି
ଚାଲେ କିଏ ଛାତି ଫୁଲେଇ,
ଆଉ କିଏ ଏଠି ସବୁ ଦେବା ପାଇଁ
ପସରା ବସିଛି ମେଲେଇ ।

ସବୁ ଦେଖାଯାଏ ଏଇଠି,
ଏଇଠି ଜୀବନ ଏଇଠି ମରଣ
ଯିବା କୁଆଡ଼କୁ କେଉଁଠି ?

ବାଦଲ ଭିତରୁ ମୁହଁ ଖୋଲେ ଯେବେ
ଚିକିମିକି ନାଲି ସୂରୁଯ,
ସୁନେଲି ରଙ୍ଗରେ ରଙ୍ଗେଇ ଦିଏ ଯେ
ବୁଣିଦେଇ ତା'ର ମୁରୁଜ ।
ଏତେ ସବୁ ପରେ ଏଇ ଦୁନିଆରେ
ମଣିଷପଣିଆ ବଞ୍ଚିଛି,
ନିଜକଥା ଭୁଲି ଆଜି ବି ଏଇଠି
ପର ପାଇଁ ନିତି ମରୁଛି ।

ସବୁ ଦେଖାଯାଏ ଏଇଠି,
ସରଗ ସହିତ ନରକର ଛବି
ମିଳିଯାଏ ଆପେ ଯେଉଁଠି ।

*କଟକ ଜି.ପି.ଓ, ୭୫୩୦୦୧*

---

## ନୀତି ମୁକ୍ତାମାଳା

ସୂର୍ଯ୍ୟ– ଆମପାଇଁ ଏହି ବାର୍ତ୍ତା ବହନ କରି ପ୍ରତ୍ୟେକ ଦିନ ଉଦୟ ହୁଏ ଏବଂ ଜଣାଇଦିଏ ଆସନ୍ତୁ ଆମେ ପୁଣି ଉଠିବା ।

ଈଶ୍ୱର ହିଁ ଆମର ଶକ୍ତିର ଉତ୍ସ । ପ୍ରତ୍ୟେକ ଯନ୍ତ୍ରଣା ଆମକୁ ଶିକ୍ଷାଦିଏ ଏବଂ ପ୍ରତ୍ୟେକ ଶିକ୍ଷା ବଦଳାଏ ।

ଯେତେବେଳେ ଆମର ମନ ଦୁର୍ବଳ ଥାଏ, ସେତେବେଳେ ପରିସ୍ଥିତିରେ ସମସ୍ୟା ଉପୁଜେ । ଆମର ମନ ଯେତେବେଳେ ସ୍ଥିର, ପରିସ୍ଥିତି ସେତେବେଳେ ଆମ ପାଇଁ ଏକ ଚାଲେଞ୍ଜ୍ ହୁଏ ଆଉ ଯେତେବେଳେ ଆମ ମନ ଦୃଢ଼ ଥାଏ, ସେତେବେଳେ ପରିସ୍ଥିତି ଆମ ପାଇଁ ସୁଯୋଗ ହୋଇଯାଏ ।

-ଗୌତମବୁଦ୍ଧ

# ରାସ୍ତାରେ କରୋନା ବୁଲୁଛି

ଶ୍ରୀ ମହେନ୍ଦ୍ର କୁମାର ଘଡ଼େଇ

ସେଦିନ ଅଙ୍ଗନବାଡ଼ି ଛୁଟି । ଦିଦି ଘର ଘର ବୁଲି କହିଆସିଲେ– ବଡ଼ ମଣିଷ କି ସାନପିଲା କାହାରିକୁ ବାହାରକୁ ଛାଡ଼ ନାହିଁ ।

ଯୋଉ ବାରରେ ଯାହା ଖାଇବା କଥା ଦିଦି ତ ଘରେ ଦେଇଯାଇଥିଲେ । ତାକୁ ଖାଇ ପିଲାଙ୍କର କି ଖୁସି !

କାବୁ ହୋଇ ରହିପାରିଲାନି ହରିଆ । ପଦାକୁ ଡିଆଁଟାଏ ମାରିଲା । ତା'ବୟସର ପିଲାଙ୍କୁ ଡାକି ମେଳି କଲା । ଛୁଆଁ-ଛୁଇଁ ଧୂଳିଖେଳରେ ଲାଗିପଡ଼ିଲା । ଘର ଭିତରକୁ ଆସିବା ପାଇଁ ବାପା-ମାଆଙ୍କ କଥା ଜମା ଶୁଣିଲାନି ।

ଏତିକିବେଳେ ରାସ୍ତାରେ ପ୍ରଚାର ଗାଡ଼ିଟିଏ ଯାଉଥିଲା । ମାଇକ୍‌ରେ କହୁଥିଲା, "ହୁସିଆର ! ସାବଧାନ ! ଘରକୁ ପଳାଅ । ରାସ୍ତାରେ କରୋନା ବୁଲୁଛି । ରାସ୍ତାରେ ଯାହାକୁ ଦେଖୁଛି, ତାକୁ ଧରିପକାଉଛି । ଏମିତି ଧରାଧରି ଛୁଆଁଛୁଇଁରେ କେତେ ଲୋକଙ୍କୁ ସିଏ ତା' ଫାଶରେ ବାନ୍ଧି ପକାଇଲାଣି । ତା ଫାଶରୁ ମୁକୁଳିବାର ବାଟ ନାହିଁ । କଲବଲ କରି ଖଟିଆ ଧରେଇ ଆରପାରିକୁ ନେଉଛି ।"

ବାଇଆ ନାଁ ଶୁଣିଲେ ହରିଆ ଦେହ ଶୀତେଇଉଠେ । କରୋନାକୁ ଗୋଟେ ବାଇଆ ଭାବି ସାଥୀପିଲାଙ୍କୁ କହିଲା, "ଚାଲ ଘରକୁ ପଳାଇବା । ବାଇଆଟା ନିଶ୍ଚେ ନାଁ ବଦଳାଇ କରୋନା ନାଁରେ ଆସୁଛି । ଚାଲାକି କରି ସମସ୍ତଙ୍କୁ ଧରି ପକାଉଛି ବୋଲି ପ୍ରଚାର ଗାଡ଼ି କହିଲାଣି । ତା ରୂପ ଆଉ କାମକୁ କବାଟ କଣରେ ଲୁଚି ବସି ଦେଖିବା । ସେ କରୋନା ଗଲା ପରେ ଆମେ ପୁଣି ଆସି ଖେଳିବା ।"

ହରିଆ କଥାରେ ପିଲାମାନେ ଯିଏ ଯୁଆଡ଼େ ଘରକୁ ଡିଆଁ ମାରିଲେ । ହରିଆ ଘରକୁ ଯାଇ କବାଟର ସରୁ ଫାଙ୍କରେ ବାହାରକୁ ଚାହିଁଲା । ବସି ବସି କାହାକୁ କିଛି ନ



ପାଇ ଚିଡ଼ିଯାଇ କହିଲା, "କରୋନା ନା ଫରୋନା! ପିଲାଙ୍କୁ ଟିକେ ଖେଳେଇ ବୁଲେଇ ଛାଡୁନି । ଏମିତି ଡରେଇ କି ଖୁସି ସିଏ ପାଉଛି । ସିଏ କ'ଣ କାହା ହସ ଖୁସି ଦେଖି ସହିପାରେନି ।"

ମାଆଙ୍କ କାନରେ ଯେମିତି ଏ କଥା ପଡ଼ିଛି, ସିଏ ହରିଆ ପାଖକୁ ଆସି କହିଲେ– କିଏ କେଉଁଠି ତୋତେ ଡରାଉଛି ?

ହରିଆ ପାଟିରେ ଆଙ୍ଗୁଳି ଦେଇ କହିଲା– ଚୁପ୍! ରାସ୍ତାରେ ପରା କରୋନା ବୁଲୁଛି ।

ମାଆ କହିଲେ– ଆମେ ତ ଆଗରୁ ସେହି କଥା କହୁଥିଲୁ । ତୁ ତ ଆମ କଥା ଶୁଣିଲୁନି । ଅମାନିଆ ହୋଇ ବାହାରକୁ ଧାଇଁଲୁ । ଏବେ ବୁଝିଲୁ ତ!

ହରିଆ କହିଲା, "ମୋର ବାଇଆକୁ ଭାରି ଡର । ତୁ ଯେତେବେଳେ କହୁଥିଲୁ, ମୁଁ ସେତେବେଳେ ମିଛ ଭାବୁଥିଲି । ପ୍ରଚାର ଗାଡ଼ି ତ ମିଛ କହିବନି । ଏଥର ଜାଣିଲି ତୋ କଥା ସତ । କରୋନାଟା ଗୋଟାଏ କ'ଣ ବାଇଆ ? ବାହାରେ ଯାହାକୁ ବୁଲିବା ଦେଖୁଛି, ତାକୁ ସିଏ ଖପାଖପ୍ ଧରିପକାଉଛି । ତା'ହାତରେ ଅଠା ଅଛି, ନ ହେଲେ ସିଏ ଯାଦୁ ଜାଣିଛି । ଧରାଧରି ଛୁଆଁଛୁଇଁରେ କୁଆଡ଼େ ସେପୁରକୁ ନେଇଯାଉଛି । ପ୍ରଚାର ଗାଡ଼ି କଥା ତା'ହେଲେ ସତ!"

ମାଆ କହିଲେ– ତୁ ଯାହା ଶୁଣିଛୁ ସବୁ ସତ । କରୋନା ବାଇଆ ଚୀନ୍ ଦେଶରୁ ଆସିଛି । ଦିନ କେତେଟାରେ ସାରା ପୃଥିବୀକୁ ଜିଭ ବୁଲେଇଦେଲାଣି । ତାକୁ କିଏ କୋବିଦ-୧୯ ତ ତାକୁ କିଏ କରୋନା ଭୂତାଣୁ କହୁଛି । ସିଏ ଶୂନ୍ୟରୁ ଶୂନ୍ୟ ଘୂରି ବୁଲୁଛି । ବାଇଆଠୁ ଆହୁରି ବଡ଼ ଭୟଙ୍କର ।

ଆଗ ଛିଙ୍କ, କାଶ, ସର୍ଦି, ଥଣ୍ଡାଜରରେ ଗଳା ଦରଜ ହେବ । ଦେହହାତ ଘୋଳାବିନ୍ଧା ହେବ । ତା'ପରେ ପୂରା ଶରୀରକୁ ଅଚଳ କରିଦେବ । ଏ ଭୂତାଣୁ ହାବୁଡ଼ରେ ଯିଏ ପଡ଼ିଲା, ତାକୁ ଅଲଗା କରି ଗୋଟିଏ ଘରେ ବନ୍ଦୀ ଭଳି ନଜରରେ ରଖି ଚିକିତ୍ସା କରିବ ।

ନାକ, ପାଟି, ମୁହଁରୁ ହାତ ଦେଇ ଜଣଙ୍କ ପାଖରୁ ଆଉ ଜଣଙ୍କ ପାଖକୁ ସହଜରେ ଡେଇଁପଡ଼େ । ସିଧାସଳଖ ଦେହରୁ ଦେହକୁ ନ ଆସିପାରିଲେ ଲୁହା, ପ୍ଲାଷ୍ଟିକ୍, ଧାତୁ, ବସ୍, ରେଳ, ଜାହାଜ, କାନ୍ଥବାଡ଼, ବ୍ୟବହାର କରୁଥିବା ଲୁଗାପଟା ଜିନିଷପତ୍ରର ଆଶ୍ରା ଖୋଜି ଡେଇଁଥାଏ ।

ଔଷଧ ବାହାରିନି । ସେଥିପାଇଁ ସମସ୍ତେ କହୁଛନ୍ତି– ସାବଧାନ! ହୁସିଆରରେ ରୁହ । ହାଟ, ବଜାର, ସିନେମାହଲ୍, ପାର୍କ, ଯାତ୍ରା, ମେଳା, ମଠ, ମନ୍ଦିର, ସଭାସମିତି, ଖେଳପଡ଼ିଆକୁ କେହି ଯାଆନି । ବିବାହ, ବ୍ରତ, ଭୋଜିଭାତକୁ ଏବେ ପୂରା ଭୁଲିଯାଅ । ଘରତୋଳା, ବିଲବାଡ଼ି, କଳକାରଖାନାରେ କାମକୁ କେହି ଯାଆନି ।

ନିଜ ଘରେ ବସି କାଗଜପତ୍ର, କମ୍ପ୍ୟୁଟର କାମ କର । ଅତି ଦରକାରୀ ସେବା– ଯେମିତି ପୁଲିସ୍, ସେନାବାହିନୀ, ଅଗ୍ନିଶମ, ଡାକତାର, ବ୍ୟାଙ୍କ୍, ଡାକ୍ତରଖାନା, ତେଜରାତି, ପରିବା, ଫଳ, ମାଛ, ମାଂସ, ଔଷଧ ଦୋକାନକୁ ଛାଡ଼ି ଆଉ ସବୁ ତାଲା ବନ୍ଦ ଭିତରେ ରହିବ ।

ଘରୁ ପଦାକୁ ଗୋଡ଼ ନ କାଢ଼ିଲେ କରୋନା ଛାତିକୁ ଦମ୍ଭ କରି ଡେଇଁପାରିବନି । ଆମେ ତାଲା ବନ୍ଦ କରି ଘର ଭିତରେ ନିୟମ ମାନି ରହିଲେ ତାକୁ ପାନେ ଚଖେଇ ଖଟିଆ ଧରେଇପାରିବା ।

ସେମିତି କିଛି ଦରକାରୀ କାମରେ ବାହାରକୁ ଗଲେ ନାକ, ପାଟି, ମୁହଁକୁ ଘୋଡ଼େଇକରି ଯିବା । ସାବୁନ୍ ପାଣିରେ ବାରମ୍ବାର ହାତକୁ ଧୋଇ ସଫା ରଖିବା । ଗରମ





ଟଟକା ଖାଦ୍ୟ ଖାଇବା । ଉଷୁମ୍ ପାଣି ପିଇବା । କରୋନାର ବାହନ ସାଜିଥିବା ସମୁଦ୍ର ଜିନିଷକୁ ଏବେ ଜମା ଖାଇବାନି । ଆହୁରି ଗୋଟିଏ ବଡ଼କଥା ମନେରଖ, ଏମିତିବେଳେ ଆମେ ମିଛ ଶୁଣିବାନି କି ମିଛ କହି ବୁଲିବାନି । ଦରକାରଠୁ ବେଶୀ ଖାଦ୍ୟପଦାର୍ଥ ଘରେ ସାଇତି ରଖିବାନି । ଏଥିପାଇଁ ପଡ଼ିଶାଘର ଯେମିତି ଭୋକଉପାସରେ ନ ରହୁ । ଅଭାବୀ ଦୁଃଖୀକୁ ସାହା ହେବା ।

ହରିଆ କହିଲା– ଯୋଉ ରାସ୍ତାରେ କରୋନା ବୁଲୁଛି, ସେ ରାସ୍ତାରେ ମୋର ଥୁକୁଲ୍ ପଡ଼ିଲା । ସେ ମାଟି ନ କାମୁଡ଼ିବା ଯାଏ ମୁଁ ଜମା ପଦାକୁ ଯିବିନି ।

ମାଆ କହିଲେ– କେବଳ ତୁ କି ମୁଁ ଲୁଚିଗଲେ ହେବନି । ସମସ୍ତଙ୍କୁ କହି, ବୁଝେଇ ଘର ଭିତରେ ବନ୍ଦ କରି ରଖିଲେ କରୋନା ସବୁଦିନ ପାଇଁ ଠସ୍ ହୋଇଯିବ ।

*କ୍ଷେତ୍ରମୋହନ ବିଦ୍ୟାପୀଠ, କଟରପଡ଼ା, ପିଠାପଡ଼ା, ନିଶ୍ଚିନ୍ତକୋଇଲି, କଟକ ।*

# ସାଧାରଣ ଜ୍ଞାନ ପରୀକ୍ଷା

ଶ୍ରୀ ଜ୍ୟୋତି ରଞ୍ଜନ ବିଶ୍ୱାଳ

୧– ହିନ୍ଦୁଶାସ୍ତ୍ରରେ ଶିବଙ୍କର ଧନୁର ନାମ କଅଣ ଅଛି ।

୨– ନରନାରାୟଣ ସେତୁ ଆମ ଦେଶର କେଉଁ ନଦୀ ଉପରେ କେଉଁଠାରେ ନିର୍ମିତ ହୋଇଛି ।

୩– SAARC ର ମୁଖ୍ୟ କାର୍ଯ୍ୟାଳୟ କେଉଁଠାରେ ଅବସ୍ଥିତ ?

୪– ସୁଲତାନ୍‌ପୁର ଜାତୀୟ ଉଦ୍ୟାନ (Sultanpur National Park) କେଉଁ ରାଜ୍ୟରେ ଅବସ୍ଥିତ ?

୫– 'ଜାତ-ଜତିନ୍' (Jata-Jatin) କେଉଁ ରାଜ୍ୟର ଏକ ପ୍ରସିଦ୍ଧ ଲୋକନୃତ୍ୟ ?

୬– ବ୍ୟାଙ୍କିଙ୍ଗ୍ କ୍ଷେତ୍ରରେ ପ୍ରଚଳିତ (NEFT) ର ପୂର୍ଣ୍ଣ ରୂପଟି କ'ଣ ?

୭– ରାମପୁର ଏବଂ ସୀତାପୁର କେଉଁ ରାଜ୍ୟର ଦୁଇଟି ଜିଲ୍ଲାର ନାମ ?

୮– କେଉଁ ଭାରତୀୟ ସ୍ୱାଧୀନତା ସଂଗ୍ରାମୀ 'ଦେଶବନ୍ଧୁ' ଭାବରେ ପରିଚିତ ?

୯– ଭାରତରେ ବସବାସ କରୁଥିବା ଚକ୍‌ମା ଶରଣାର୍ଥୀମାନେ ମୂଳତଃ କେଉଁ ଦେଶର ଅଧିବାସୀ ଅଟନ୍ତି ।

୧୦– ପୃଥିବୀର ସର୍ବ ପୁରାତନ ଜାତୀୟ ସଙ୍ଗୀତ କେଉଁ ଦେଶର ।

*ଦୁର୍ଗାପୁର, ଭାୟା- ତାଳଚେର, ଅନୁଗୁଳ-୭୫୯୧୦୦*

*(ଉତ୍ତର ୧୯ ପୃଷ୍ଠାରେ)*

# ନାପିତ ଓ ବ୍ରହ୍ମରାକ୍ଷସ

**ଶାନ୍ତି ସାମଲ**

ବଙ୍ଗଳାର ବର୍ଦ୍ଧମାନ ଜିଲ୍ଲାରେ ଗୋଟିଏ ନାପିତ(ବାରିକ) ଓ ତାର ମା ଏକା ସାଙ୍ଗରେ ରହୁଥିଲେ । ନାପିତ ବହୁତ ଅଳସୁଆ ଥିଲା । ମା ଦିନ ସାରା କାମ କରି କରି ଥକିଯାଉଥିଲା । ପୁଅକୁ ଯେତେ କହିଲେ ବି ସେ କାମ କରିବାକୁ ଯାଉ ନଥିଲା । ଦିନସାରା ଗୋଟିଏ ଆଇନା ଓ ପାନିଆ ଧରି ଏପଟ ସେପଟ କରୁଥାଏ । ବୁଢ଼ୀ ଗାଁ ଲୋକଙ୍କର କାମକରି ଯାହା ପାଏ, ସେଥିରେ ସେ ଦୁହେଁ ଚଳନ୍ତି । ସେମାନଙ୍କର ଯେତିକି ଜମି ଥାଏ, ସେଥିରେ ପୁଅ ଚାଷ କରିବାକୁ ଯାଏନା । ବୁଢ଼ୀ ଲୋକ ଲଗାଇ ଚାଷ କରାଏ । ବୁଢ଼ୀ ଦିନେ ବିରକ୍ତ ହୋଇ ପୁଅକୁ ବହୁତ ଅପମାନ ଦେଇ ଗାଳିଦେବା ସଙ୍ଗେ ସଙ୍ଗେ ଝାଡୁରେ ତାକୁ ବାଡ଼େଇଲା । ମା ପୁଅକୁ କହିଲା, ''ତୁ ମୋ ଘରୁ ବାହାରି ଯାଆ । ଯେତେବେଳେ କିଛି ରୋଜଗାର କରିବୁ, ସେତେବେଳେ ମୋ ଘରକୁ ଆସିବୁ ।'' ନାପିତ ଅପମାନିତ ହୋଇ ଗାଁ ଛାଡ଼ି ଅନେକ ଦୂରକୁ ଚାଲିଗଲା । ବାଟରେ ଜଙ୍ଗଲ ପଡ଼ିଲା ଓ ସେଇ ସମୟରେ ରାତି ବି ହୋଇଗଲା ।

ଜଙ୍ଗଲ ଭିତରେ ଭଗବାନଙ୍କୁ ଡାକିଡାକି ଯାଉଥାଏ । କିଛିଦୂର ଯିବା ପରେ ସେ ଗୋଟିଏ ବ୍ରହ୍ମରାକ୍ଷସକୁ ଦେଖିବାକୁ ପାଇଲା । ବ୍ରହ୍ମରାକ୍ଷସ ତାକୁ ଦେଖି ଖୁସିରେ ଡେଇଁଡେଇଁ ନାଚୁ ଥାଏ । ନାପିତ କ'ଣ କରିବ ଭାବି ପାରୁ ନ ଥାଏ । ମନରେ ସାହସ ବାନ୍ଧି ସେ ବି ବ୍ରହ୍ମରାକ୍ଷସ ସାଙ୍ଗରେ ନାଚିବାକୁ ଲାଗିଲା । ବ୍ରହ୍ମରାକ୍ଷସ କିଛି ସମୟ ନାଚିଲା ପରେ ନାପିତକୁ ପଚାରିଲା ''ତୁ କାହିଁକି ନାଚୁଛୁ ?'' ନାପିତ ବ୍ରହ୍ମରାକ୍ଷସକୁ ପଚାରିଲା ''ତୁ କାହିଁକି ନାଚୁଛୁ ?'' ବ୍ରହ୍ମରାକ୍ଷସ କହିଲା, ''ମୁଁ ଆଜି ତୋତେ ଠିକ୍ ଭୋକ ସମୟରେ ପାଇଲି । ତୋର ମାଂସ ଭଲ ଭାବରେ ଖାଇବି ବୋଲି ଖୁସିରେ ନାଚୁଛି । ଏବେ କହ ତୁ କାହିଁକି ନାଚୁଛୁ ?''

ନାପିତ କହିଲା, ''ଆମ ରାଜାଙ୍କର ପୁଅର ଦେହ ବହୁତ ଖରାପ । ଡାକ୍ତରମାନେ ରାଜାଙ୍କୁ କହିଛନ୍ତି ପୁଅକୁ ଏକଶହ-ଏକ ବ୍ରହ୍ମରାକ୍ଷସଙ୍କର କଳିଜା ଖାଇବାକୁ ଦେବାକୁ । ଶହେ ବ୍ରହ୍ମରାକ୍ଷସଙ୍କର କଳିଜା ତାକୁ ଖାଇବାକୁ ଦିଆସରିଲାଣି । ଆଉ ଗୋଟିଏ ବ୍ରହ୍ମରାକ୍ଷସର କଳିଜା ଦରକାର ଅଛି । ମୁଁ ତୋତେ ଦେଖି ଖୁସି ହେଲି ଯେ ତୋର କଳିଜା ରାଜାଙ୍କ ପୁଅକୁ ଦେଇପାରିବି । ମୁଁ ତୋର ଆତ୍ମାକୁ ନେଇସାରିଲିଣି, କେବଳ ତୋତେ କାଟି କରି ତୋ ଦେହରୁ କଳିଜା ବାହାର କରିବାକୁ ପଡ଼ିବ । ଏହା କହି ସେ ତାର



ଆଇନା ବ୍ରହ୍ମରାକ୍ଷସକୁ ଦେଖାଇଲା । ବ୍ରହ୍ମରାକ୍ଷସ ନିଜକୁ ଆଇନାରେ ଦେଖି ନାପିତର କଥାକୁ ପୂରାପୂରି ବିଶ୍ୱାସ କରିଗଲା । ସେ ନାପିତକୁ ବହୁତ ଅନୁରୋଧ କଲା, ତାର ଆତ୍ମାକୁ ଛାଡିଦେବା ପାଇଁ । ନାପିତ ମୋଟେ ରାଜି ହେଉ ନଥାଏ । ବ୍ରହ୍ମରାକ୍ଷସ ନାପିତକୁ କହିଲା ''ମୁଁ ତୋତେ ବହୁତ ଧନରତ୍ନ ଦେବି ଓ ତୋର ଯାହା ବି କାମ କରିବାର ଅଛି ମୁଁ କରିଦେବି ।'' ନାପିତ କହିଲା ''ପ୍ରଥମେ ଧନସଂପତ୍ତି ମୋତେ ଦେଖା, ତା'ପରେ ମୁଁ ସେ ବିଷୟରେ ଭାବିବି ।

ବ୍ରହ୍ମରାକ୍ଷସ ସଙ୍ଗେ ସଙ୍ଗେ ସେ ଜଙ୍ଗଲରେ ଗୋଟିଏ ଗଛ ଉପାଡ଼ିଦେଲା ଓ ତାର ତଳେ ଥିବା ସାତଟି ସୁନା ମୋହର ଭରିଥିବା ଗରା ମାଠିଆ ଦେଖାଇଲା । ନାପିତ କହିଲା– 'ଠିକ୍ ଅଛି ତୁ ମୋତେ ଓ ଏଇ ମାଠିଆ ସବୁକୁ ମୋ ଘରେ ପହଞ୍ଚାଇ ଦେ ।' ସଙ୍ଗେ ସଙ୍ଗେ ବ୍ରହ୍ମରାକ୍ଷସ ନାପିତକୁ ଓ ସାତଟି ସୁନାଗରାକୁ ନେଇ ନାପିତର ଘରେ ପହଞ୍ଚାଇ ଦେଲା । ନାପିତ ଟିକେ ଗମ୍ଭୀର ହୋଇ କହିଲା, ''ଠିକ୍ ଅଛି, ମୋର ଜମି ଶୀଘ୍ର ହଳ କରିଦେ, ତା'ପରେ ମୁଁ ତୋର ଆତ୍ମାକୁ ଛାଡ଼ିଦେବି ।'' ବ୍ରହ୍ମରାକ୍ଷସ ହଳ କରୁଥିବା ସମୟରେ ତାର ଆଉ ଗୋଟିଏ ବ୍ରହ୍ମରାକ୍ଷସ ସାଙ୍ଗ ଦେଖାହେଲା ।



ସେ ତାକୁ ଏଠାରେ ହଳ କରୁଥିବା କାରଣ ପଚାରିଲା ।

ପ୍ରଥମ ବ୍ରହ୍ମରାକ୍ଷସ କହିଲା, ''ମୋ ଆତ୍ମାକୁ ନାପିତ ବାନ୍ଧିରଖିଛି । ମୁଁ ହଳ କରିସାରିବା ପରେ ସେ ମୋ ଆତ୍ମାକୁ ଛାଡିବ ।'' ଦ୍ୱିତୀୟ ବ୍ରହ୍ମରାକ୍ଷସ କହିଲା, ''କ'ଣ ବାଜେ କଥା କହୁଛୁ ! ଆମେ ବ୍ରହ୍ମରାକ୍ଷସମାନେ ମଣିଷଙ୍କ ଠାରୁ ବୁଦ୍ଧିମାନ ଓ ଶକ୍ତିମାନ । ଚାଲ ଯିବା ସେ ନାପିତ ପାଖକୁ ।'' ପ୍ରଥମ ବ୍ରହ୍ମରାକ୍ଷସ ଦ୍ୱିତୀୟ ବ୍ରହ୍ମରାକ୍ଷସକୁ ନାପିତର ଘର ଦେଖାଇଦେଲା । ଡରି କରି ନିଜେ ଗଲାନି ।

ନାପିତର ମା ପୁଅର ଧନସଂପତ୍ତି ଆଣିବା ଦେଖି ଖୁସିରେ ପୁଅପାଇଁ ମାଛତରକାରି କରିବ ବୋଲି ମାଛ ଆଣି ମାଛକୁ ଘରେ ରଖି ପନିକି ପାଇଁ ଯାଉଛି, ଦେଖିଲା ବିଲେଇ ଅଧା ମାଛ ଖାଇଦେଇଛି । ନାପିତ ମା'କୁ ଆସିବାର ଦେଖି ବିଲେଇ ଭଙ୍ଗା ଝରକା ବାଟେ ଦୌଡ଼ି ପଳାଇଲା । ମାଆ ଅଧାଖିଆ ମାଛ ଦେଖି ରାଗିକରି ବିଲେଇକୁ ପନିକିରେ କାଟିବ ବୋଲି ଝରକା ପାଖରେ ଠିଆହୋଇଥାଏ । ସେତିକି ବେଳେ ଦ୍ୱିତୀୟ ବ୍ରହ୍ମରାକ୍ଷସ ଝରକା ବାଟେ ମୁଣ୍ଡ ଗଳାଇ ଘରଭିତରକୁ ପଶିବା ପାଇଁ ଚେଷ୍ଟା କରୁଥିଲା । ଶବ୍ଦ ଶୁଣି ନାପିତର ମା ପନିକିରେ ଚୋଟେ ଦେଲା । ଦ୍ୱିତୀୟ ବ୍ରହ୍ମରାକ୍ଷସର ନାକ କଟିଗଲା । ସେ ଲାଜରେ ପ୍ରଥମ ବ୍ରହ୍ମରାକ୍ଷସକୁ ଦେଖା ନ କରି ଅନ୍ୟସ୍ଥାନକୁ ଚାଲିଗଲା । ହଳ କାମ ସାରି ପ୍ରଥମ ବ୍ରହ୍ମରାକ୍ଷସ ନାପିତ ପାଖକୁ ଆସିଲା । ନାପିତ ଏଥରକ ବ୍ରହ୍ମରାକ୍ଷସକୁ ସାବାସ୍ କହି ଆଇନାର ପଛପଟଟି ଦେଖାଇଲା । ବ୍ରହ୍ମରାକ୍ଷସ ନିଜର ଆତ୍ମାକୁ ଫେରିପାଇଛି ଭାବି ଖୁସିରେ ଜଙ୍ଗଲକୁ ଚାଲିଗଲା ।

*ଅରୁଣୋଦୟ ନଗର, କଟକ-୧୪*

# ପାଇକ ସମରର ବୀରଗାଥା

### ଶ୍ରୀ ସତ୍ୟବାଦୀ ବଳିଆରସିଂହ

ଇଂରେଜ କୁଶାସନ, କରବୃଦ୍ଧି, କଉଡ଼ିର ଅବମୂଲ୍ୟାୟନ ଓ ଉଚ୍ଛେଦ, ଏକଚାଟିଆ ଲବଣ ଉତ୍ପାଦନ, ଲବଣରେ ମୂଲ୍ୟବୃଦ୍ଧି, ସୂର୍ଯ୍ୟାସ୍ତ ଆଇନ୍ ସର୍ବରାକାର ଓ ଅମଲାମାନଙ୍କ ଅତ୍ୟାଚାର ବିରୋଧରେ ପୁଞ୍ଜିଭୂତ ଅସନ୍ତୋଷ ଫଳରେ ୧୮୧୭ ମସିହାରେ ଏକ ବଡ଼ ଗଣବିପ୍ଳବ ଆରମ୍ଭ ହୋଇଥିଲା । ଇଂରେଜ ସରକାର ନିଜ କୁଶାସନର ଅସଲ ସ୍ୱରୂପକୁ ଲୁଚାଇବା ପାଇଁ ଏହି ବିଦ୍ରୋହକୁ ପାଇକମାନଙ୍କର ବିଦ୍ରୋହ, ଅର୍ଥାତ୍ ନୂତନ ଭୂବନ୍ଦୋବସ୍ତ ଫଳରେ ନିଷ୍କର ଭୂମି ହରାଇଥିବା ପାଇକମାନଙ୍କର ବିଦ୍ରୋହ ବୋଲି ଆଖ୍ୟା ଦେଇଥିଲେ ।



ଏଥିରେ ପାଇକମାନଙ୍କ ବ୍ୟତୀତ ସବୁ ଶ୍ରେଣୀର ଲୋକେ– ଯଥା ଲବଣ ଉତ୍ପାଦନ କରୁଥିବା ମଲାଙ୍ଗୀ, ସୂର୍ଯ୍ୟାସ୍ତ ଆଇନ୍ ଅନୁସାରେ ଜମିଦାରୀ ହରାଇଥିବା ଲୋକ, ସାଧାରଣ କୃଷକ, ଜଗନ୍ନାଥ ମନ୍ଦିରର ପୂଜକ ଓ ଆଦିବାସୀ କନ୍ଧମାନେ ଯୋଗଦେଇଥିଲେ । ୧୮୧୭ ମସିହାରେ ମାର୍ଚ୍ଚ ୨୯ ତାରିଖରୁ ବାଣପୁରରୁ ଆରମ୍ଭ ହୋଇ ସମଗ୍ର ଖୋର୍ଦ୍ଧାରେ ବିପ୍ଳବର ବହ୍ନି ପ୍ରଜ୍ୱଳିତ ହୋଇ ୧୮୧୮ ଡିସେମ୍ବର ମାସ ବେଳକୁ ବିଦ୍ରୋହ ଦବିଯାଇଥିଲା ।



ବକ୍ସି ଜଗବନ୍ଧୁ

ଏହାପରେ କେତେକ ବିଦ୍ରୋହୀ ଲୁଚାଛପା ଭାବରେ ପ୍ରଶାସନକୁ ଅଚଳ କରିବା ପାଇଁ କାର୍ଯ୍ୟ କରୁଥିଲେ । ବକ୍ସି ଜଗବନ୍ଧୁ ଘୁମୁସର ଓ ନୟାଗଡ଼ ରାଜାଙ୍କ ସହାୟତାରେ ଗୋପନୀୟ ଭାବେ ବିଦ୍ରୋହାତ୍ମକ କାର୍ଯ୍ୟ ଚଳାଇଥିଲେ । ଶେଷରେ ଇଂରେଜ ସରକାର ବକ୍ସିଙ୍କୁ ସନ୍ତୁଷ୍ଟ କରିବା ପାଇଁ ଆଲୋଚନା ଚଳାଇଲେ ଏବଂ ତାଙ୍କୁ ମାସିକ ଭତ୍ତା ଦେଇ କଟକରେ ରଖାଇଲେ ।

ଏହା ଥିଲା ୧୮୨୫ ମସିହା ମଇମାସ ୨୭ ତାରିଖର ଘଟଣା । ତାଙ୍କ ସଂଗ୍ରାମର ଅବଧି ଥିଲା ଆଠ ବର୍ଷ ଏକ ମାସ ଅଠେଇଶ ଦିନ । ଭାରତରେ ଇଂରେଜମାନଙ୍କ ବିରୋଧରେ ଯେତେ ବିଦ୍ରୋହ ହୋଇଛି, ଏହା ହେଉଛି ସର୍ବାଧିକ ସମୟ ପାଇଁ । ୧୮୧୭ ଗଣ ବିଦ୍ରୋହରେ ବକ୍ସି ମୁଷ୍ଟିମେୟ ସହଚରମାନଙ୍କ ସାହାଯ୍ୟରେ ଗରିଲା ଯୁଦ୍ଧ କରି କରି ପରିଶେଷରେ ଲୁଚିବୁଲି ଆତ୍ମରକ୍ଷା କରିବାକୁ ବାଧ୍ୟ ହୋଇଥିଲେ । ସେହି ଦୁର୍ଦ୍ଦିନରେ

ହୋଇଥିବା ଦୁର୍ଦ୍ଦଶା ସମ୍ବନ୍ଧରେ "ଅଠରଶହ ସତର" ଉପନ୍ୟାସରେ ଗୋଦାବରୀଶ ମିଶ୍ର ଲେଖିଛନ୍ତି ଯେ, "ଏପରି ଗଛମୂଳ ନଥିଲା ଯେଉଁଠି ବକ୍ସି, ଦୁଇରାତି ଶୋଇଥିଲେ, ଏପରି ପୋଖରୀ ନଥିଲା ଯେଉଁଠି ସେ ଦୁଇଥର ପାଣି ପିଇଥିଲେ ଏବଂ ଏପରି ଘର ନଥିଲା ଯେଉଁଠି ସେ ଦୁଇଥର ଭୋଜନ କରିଥିଲେ । ବକ୍ସି ଶ୍ୱାପଦ-ସଂକୁଳ ବଣପାହାଡ଼ରେ ଲୁଚି ବୁଲି ଏକପ୍ରକାର ବଣ ମଣିଷ ଜୀବନ ଜିଇଁଥିଲେ ।'' ବକ୍ସିଙ୍କୁ ଥରକୁ ଥର ଚେଷ୍ଟା କରି ମଧ୍ୟ ଇଂରେଜମାନେ ଧରିପାରୁ ନ ଥିଲେ । ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ହୋଇଥିବା ପାଇକ ଗଣ-ବିପ୍ଲବ ପରେ ୧୮୨୭ରେ ତାପଙ୍ଗ ଯୁଦ୍ଧ ଓ ୧୮୩୬ରେ ବାଣପୁର ବିଦ୍ରୋହ ବା ଫଂଚୁଆ – ଫତୁରୀ କନ୍ଧମେଳି ହୋଇଥିଲା ।

ଇଷ୍ଟ ଇଣ୍ଡିଆ କମ୍ପାନୀ ୧୮୦୩ରେ ଖୋର୍ଦ୍ଧା ଆସିବା ପରେ ୧୮୦୪ରେ ହୋଇଥିଲା ଖୋର୍ଦ୍ଧା ରାଜ ବିଦ୍ରୋହ । ଖୋର୍ଦ୍ଧା ରାଜ ବିଦ୍ରୋହ ପୂର୍ବରୁ ଦକ୍ଷିଣ ଓଡ଼ିଶାରେ ମଧ୍ୟ ରାଜ ବିଦ୍ରୋହମାନ ସଂଘଟିତ ହୋଇଥିଲା ଡ. ସୁରେନ୍ଦ୍ରନାଥ ପାଣିଗ୍ରାହୀଙ୍କ 'ଗଂଜାମ: ଐତିହ୍ୟ ଓ ପରମ୍ପରାର ପୁଣ୍ୟଭୂମି' ପୁସ୍ତକର ୨୨୯ ପୃଷ୍ଠାରେ ଉଲ୍ଲେଖ ଅଛି, "ପାହାଡ଼ ପର୍ବତଘେରା ଆଦିବାସୀ ଅଧ୍ୟୁଷିତ ଶେରଗଡ଼ ରାଜ୍ୟରେ ବ୍ରିଟିଶ୍‌ବିରୋଧୀ ଆନ୍ଦୋଳନ ଅଭୂତପୂର୍ବ ଓ ଅସାଧାରଣ ଥିଲା । ରାଜା ଅଦ୍ୱୈତ ସିଂହଦେଓ(୧୭୭୯-୧୮୦୦) ବ୍ରିଟିଶ ଶାସନ ବିରୋଧରେ ପ୍ରବଳ ଆନ୍ଦୋଳନ ଚଳାଇଥିଲେ । ରାଜା ଅପୂର୍ବ ସାହସୀ ଓ ବୀରତ୍ୱର ଅଧିକାରୀ ଥିଲେ । ତାଂକ ମାମୁଙ୍କ ରାଜ୍ୟ ଥିଲା ଘୁମୁସର । ସେହି ରାଜ୍ୟରେ ଇଂରେଜମାନଙ୍କ ଦମନଲୀଳା ତାଙ୍କ ମନରେ ଗଭୀର ଆଘାତ ଦେଇଥିଲା । ଘୁମୁସରର ରାଜା ଶ୍ରୀକର ଭଂଜଙ୍କ ସହ ମିଶି ସେ ଇଂରେଜ ସୈନ୍ୟଙ୍କ ସହ ଯୁଦ୍ଧକଲେ । ବଡ଼ଖେମୁଣ୍ଡି, ସାନଖେମୁଣ୍ଡି, ଘୁମୁସର, ମହୁରୀ ପ୍ରଭୃତି ଜମିଦାରଙ୍କୁ ଏକାଠି କରି ବିଦ୍ରୋହକୁ ନୂତନ ରୂପ ଦେଲେ । ରାଜା ଅଦ୍ୱୈତ ସିଂହଦେଓଙ୍କ ନେତୃତ୍ୱରେ ମିଳିତ ସୈନ୍ୟବାହିନୀ ଶେରଗଡ଼ ଠାରେ ସଜାଗ ରହିଥିଲା । ଘୁମୁସର ସେନା, ଶେରଗଡ଼ ଅଭିମୁଖେ ଆସିବାର ଥାଏ, ଲେଫ୍ଟନାଣ୍ଟ କର୍ଣ୍ଣେଲ ସ୍ମିଥ ବ୍ରିଟିଶ ସେନାବାହିନୀର ନେତୃତ୍ୱ ନେଇ ଶେରଗଡ଼ରେ ପହଂଚିଲା । ଦୁଇ ବାହିନୀ ମଧ୍ୟରେ ଘମାଘୋଟ ଲଢ଼ାଇ ଚାଲିଲା । ରାଜା ଅଦ୍ୱୈତ ସିଂହଦେଓ ଅପୂର୍ବ ବୀରତ୍ୱର ସହ ଲଢ଼ିଥିଲେ ମଧ୍ୟ ଇଂରେଜ ସୈନ୍ୟଙ୍କ ଛ' ପାଉଣ୍ଡର ତୋପରୁ ଏକ ଗୁଳି ଚୋଟରେ ତାଙ୍କ ମୁଣ୍ଡ କଟି ଉଡ଼ି ଯାଇଥିଲା । ଦେଶମାତୃକାର ସେବାରେ ତାଙ୍କ ପ୍ରାଣବଳିର ପଟାନ୍ତର ନାହିଁ । ସ୍ୱାଧୀନତା ସଂଗ୍ରାମର ସେ ପ୍ରଥମ ଓଡ଼ିଆ ଶହିଦ ହେଲେ ।

୧୮୦୩ ଅକ୍ଟୋବର ୩ ରେ ଇଂରେଜମାନେ ବାରବାଟୀ ଦୁର୍ଗ ଅଧିକାର କରିବା ପରେ ୧୮୦୪ ଜାନୁୟାରୀ ମାସରେ ମେଜର ବ୍ରାଉଟନ୍‌ଙ୍କ ଦ୍ୱାରା ସମ୍ବଲପୁର ଜୟ କରିନେଲେ । ବଉଦ ଓ ସୋନପୁରର ରାଜାମାନେ ବଡ଼ମୂଳ ଘାଟିଠାରେ ଇଂରେଜ ସେନାପତି ଫୋର୍ବିସଙ୍କୁ ସାକ୍ଷାତ କରି ଇଂରେଜଙ୍କର ବଶ୍ୟତା ସ୍ୱୀକାର କଲେ । ଶେଷରେ ଇଂରେଜ ଓ ମରହଟ୍ଟାମାନଙ୍କର ଦେଓଗାଁ ଚୁକ୍ତି ସ୍ୱାକ୍ଷରିତ ହେଲା । ଏଥିରେ ଇଂରେଜମାନଙ୍କର ଓଡ଼ିଶା ଅଧିକାର ଅନୁମୋଦିତ ହେଲା। ଓଡ଼ିଶାର ଗଡ଼ଜାତ ରାଜାମାନେ ଇଂରେଜଙ୍କର ବଶ୍ୟତା ସ୍ୱୀକାର କଲେ । ଖୋର୍ଦ୍ଧା ରାଜାଙ୍କୁ ବଶ୍ୟତା ସ୍ୱୀକାର ପାଇଁ ୧୮୦୩ ମସିହା ନଭେମ୍ବର ମାସ ୨୯ ତାରିଖ ରାଜାଙ୍କ ପ୍ରତିନିଧିଙ୍କୁ ଆଲୋଚନା ପାଇଁ ଡକାଇଲେ । ୧୮୦୪ ଫେବୃଆରୀ

୨୦ ତାରିଖ ପତ୍ରରେ ରାଜା କୁପରାମର୍ଶ ଦ୍ୱାରା ପରିଚାଳିତ ହେଉଛନ୍ତି ବୋଲି ପୂର୍ବଭଳି ଅଭିଯୋଗ କଲେ । ଏଣେ ଇଂରେଜମାନେ ପୂର୍ବ ସର୍ତ୍ତ ଅନୁଯାୟୀ ଲେମ୍ବେଇ, ରାହାଙ୍ଗ, ସିରାଇ ଓ ଚବିଶକୁଦ ପ୍ରଗଣା ଫେରାଇବା ପାଇଁ କୌଣସି ପଦକ୍ଷେପ ନେଲେ ନାହିଁ । ଫଳରେ ନାବାଳକ ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କ ପକ୍ଷରୁ ଦୁଇଶହ ସୈନ୍ୟ ନେଇ ୧୮୦୪ ମସିହା ମାର୍ଚ୍ଚ ମାସରେ ଜୟୀ ରାଜଗୁରୁ କଟକ ଗଲେ ଓ କର୍ଣ୍ଣେଲ ହାରକୋର୍ଟଙ୍କୁ ଦେଖାକଲେ ଏବଂ ଚାରୋଟି ପ୍ରଗଣା ଫେରାଇ ଦେବାକୁ ଦାବି କଲେ । ଚୁକ୍ତି ଅନୁଯାୟୀ ପ୍ରାପ୍ୟ ଏକ ଲକ୍ଷ ଟଙ୍କାକୁ ଅବଶିଷ୍ଟ ଫେରାଇ ଦେବାକୁ ଅନୁରୋଧ କଲେ । କର୍ଣ୍ଣେଲ ହାରକୋର୍ଟ ସଙ୍ଗେ ସଙ୍ଗେ ଚାଳିଶ ହଜାର ଟଙ୍କା ଦେଇଦେଲେ ଏବଂ ପୂର୍ବରୁ ଦଶ ହଜାର ଦିଆଯାଇଥିବା ସୂଚନା ଦେଇ ଅବଶିଷ୍ଟ ପଚାଶ ହଜାର ଟଙ୍କା ରାଜା ବଶ୍ୟତା ଚୁକ୍ତିରେ ଦସ୍ତଖତ କଲାପରେ ଦିଆଯିବ ବୋଲି କହିଲେ । କିନ୍ତୁ ୪ଟି ପ୍ରଗଣା ମଧ୍ୟରୁ ଇଞ୍ଚେ ମଧ୍ୟ ଜାଗା ଦିଆଯିବାର ପ୍ରଶ୍ନ ଉଠୁନାହିଁ ବୋଲି କହିଲେ ।


ଜୟୀ ରାଜଗୁରୁ

ଜୟୀ ରାଜଗୁରୁ ବ୍ୟର୍ଥ ମନରେ ୪୦ ହଜାର ଟଙ୍କା ଧରି ଖୋର୍ଦ୍ଧା ଫେରିଲେ ଏବଂ ଉକ୍ତ ଟଙ୍କା ରାଜାଙ୍କୁ ନଦେଇ ପାଇକମାନଙ୍କ ବାକିଆ ଟଙ୍କା ଶୁଝିବା ସହିତ ଇଂରେଜମାନଙ୍କ ବିରୋଧରେ ଲଢ଼ିବା ମନୋଭାବ ନେଇ ଆଗେଇଚାଲିଲେ । ଏଣେ କର୍ଣ୍ଣେଲ ହାରକୋର୍ଟ ଖୋର୍ଦ୍ଧା ରାଜାଙ୍କୁ ଜବତ୍ କରିବା ପାଇଁ ଗଭର୍ଣ୍ଣର ଜେନେରାଲ ଲର୍ଡ ଓ୍ୱେଲସଲିଙ୍କ ସହ ଯୋଗାଯୋଗ କଲେ ।


ଖୋର୍ଦ୍ଧା ରାଜା ମୁକୁନ୍ଦଦେବ


ଏଥିରେ ଓ୍ୱେଲସଲି ରାଜି ହୋଇ ନ ଥିଲେ ।

କାରଣ ପୂର୍ବରୁ ହୋଲକାରମାନଙ୍କ ବିରୋଧରେ ଯୁଦ୍ଧ ଘୋଷଣାକୁ ଇଂଲଣ୍ଡରେ ସମସ୍ତେ ନିନ୍ଦା କରିଥିଲେ। ତେଣୁ ଯୁଦ୍ଧ ନକରି ରାଜାଙ୍କୁ ବାଟକୁ ଆଣିବାକୁ ପରାମର୍ଶ ଦେଲେ । ହାରକୋର୍ଟ ଯୁଦ୍ଧ ନକରି ଅନ୍ୟ ସମସ୍ତ ପନ୍ଥା ଗ୍ରହଣ କଲେ । ପ୍ରଥମେ ଖୋର୍ଦ୍ଧା ରାଜା ଓ ମରହଟ୍ଟାଙ୍କ ସଙ୍ଗେ ଚିଠିପତ୍ର ନେବା ଆଣିବାରେ ନିଯୁକ୍ତ ଥିବା ଶମ୍ଭୁ ଭାରତୀଙ୍କୁ ଗିରଫ କରାଗଲା। ଜୟୀ ରାଜଗୁରୁଙ୍କୁ ହଟାଇବା ପାଇଁ ଇଂରେଜ କ୍ୟାପଟେନ୍ ବ୍ଲଣ୍ଟଙ୍କୁ ଗ୍ରହଣ କରିବା ପାଇଁ ରାଜାଙ୍କୁ ଅନୁରୋଧ କରାଗଲା । ଅନୁରୋଧ କରାଯିବାର ଦିନକ ପୂର୍ବରୁ ଏକ ପତ୍ରବାହକ ଦୂତ ପଠାଗଲା । ଦୂତ ଖୋର୍ଦ୍ଧାରେ ଦୀର୍ଘ ୧୪ ଦିନ ଅପେକ୍ଷା କରି ଫେରିଆସିବାକୁ ପଡ଼ିଲା । ଶେଷରେ ଖୋର୍ଦ୍ଧା ରାଜା ଓ ଇଂରେଜଙ୍କ ମଧ୍ୟରେ ଆଲୋଚନା ବାଟ ବନ୍ଦ ହୋଇଗଲା ।

ଖୋର୍ଦ୍ଧା ରାଜାଙ୍କ ପକ୍ଷରୁ ଇଂରେଜ ବିରୋଧୀ ଯୁଦ୍ଧ ପାଇଁ କେତେକ ମରହଟ୍ଟା ସର୍ଦାରଙ୍କୁ ନିଯୁକ୍ତି ଦିଆଗଲା । ଖୋର୍ଦ୍ଧା ଗଡ଼ ବାହାରେ ଦୁଇଶହ ସୈନ୍ୟ ଓ ଗଡ଼ ଭିତରେ ତିନି ଶହ ସୈନ୍ୟ ସହିତ ଦୁଇଟି ତୋପ ରହିବାର ବ୍ୟବସ୍ଥା କରାଗଲା । ଘାଟି ଜାଗା ଯଥା- ଡେଲାଙ୍ଗ, ବାଣପୁର, ତରତୁଆ, ଗଙ୍ଗପଡ଼ା ପ୍ରଭୃତି ସ୍ଥାନରେ ସୈନ୍ୟ ମୁତୟନ କରାଯାଇଥିଲା । ଖୋର୍ଦ୍ଧା ରାଜାଙ୍କ ନିର୍ଦ୍ଦେଶ ପାଇ କନିକା, କୁଜଙ୍ଗ ଓ ହରିଶପୁର ରାଜାମାନେ ଇଂରେଜ ବିରୋଧୀ ଆନ୍ଦୋଳନ ଚଳାଇଲେ । ଅନ୍ୟପକ୍ଷରେ ବାଙ୍କୀ, ଖଣ୍ଡପଡ଼ା, ଡମପଡ଼ା, ରଣପୁର ଓ ନୟାଗଡ଼ର ରାଜାମାନେ ଇଂରେଜମାନଙ୍କୁ ପରୋକ୍ଷରେ ସମର୍ଥନ ଦେଲେ । ଖୋର୍ଦ୍ଧା ରାଜାଙ୍କ ଇଂରେଜଙ୍କ ବିରୋଧୀ ଯୁଦ୍ଧ ୧୮୦୪ ନଭେମ୍ବର ୨୨ ରୁ ଡିସେମ୍ବର ୩ ତାରିଖ ମଧ୍ୟରେ ସମାପ୍ତ ହୋଇଥିଲା । ଏହି ଯୁଦ୍ଧର ଅବଧି ମାତ୍ର ୧୨ ଦିନ ଥିଲା । ଏହା ଥିଲା ଖୋର୍ଦ୍ଧା ରାଜ ବିଦ୍ରୋହ ଯୁଦ୍ଧ । ଇଂରେଜମାନେ ସାମରିକ କାର୍ଯ୍ୟାନୁଷ୍ଠାନ ଅତି ଦକ୍ଷତାର ସହିତ କରିଥିଲେ । ବାରବାଟୀ ଗଡ଼ର ସୁରକ୍ଷା ପାଇଁ ୨୫୦ ଅଶ୍ୱାରୋହୀ ଓ ୯୦୦ ସୈନ୍ୟ ମୁତୟନ କରିବା ପରେ କ୍ୟାପଟେନ୍ ହିକ୍‌ଲାଣ୍ଡଙ୍କ ନେତୃତ୍ୱରେ ୧୨୦ ଜଣ ସୈନ୍ୟ ପିପିଲି ପଠାଇଲେ । ପିପିଲି ଦୁର୍ଗଠାରେ ରାଜାଙ୍କ ସୈନ୍ୟମାନଙ୍କ ଉପରେ ସେମାନେ ୧୮୦୪ ନଭେମ୍ବର ୨୨ ତାରିଖ ଦିନ ଅତର୍କିତ ଆକ୍ରମଣ କଲେ । ପିପିଲି ଦୁର୍ଗ ନିକଟରେ ଖଣ୍ଡଯୁଦ୍ଧ ହେଲା। ଏଥିରେ ରାଜାଙ୍କର ବହୁ ସୈନ୍ୟ ନିହତ ହେଲେ । ଅନ୍ୟ ପକ୍ଷରେ ଇଂରେଜ ପକ୍ଷରୁ ଜଣେ ଲସ୍କର, ଜଣେ ହାବିଲଦାର, ଜଣେ ବାଦ୍ୟକାର ଓ ଛଅ ଜଣ ସିପାହୀ ଯୁଦ୍ଧରେ ଆଘାତପ୍ରାପ୍ତ ହୋଇଥିଲେ । ଯୁଦ୍ଧରେ ପାଇକମାନେ ପରାଜିତ ହେଲେ । କ୍ୟାପଟେନ୍ ଷ୍ଟୋରେଙ୍କ ନେତୃତ୍ୱରେ ଇଂରେଜ ସୈନ୍ୟ ଗଙ୍ଗପଡ଼ା ଠାରେ ପହଞ୍ଚିଲେ । ଅନ୍ୟପକ୍ଷରେ ଖୋର୍ଦ୍ଧା ରାଜାଙ୍କ ପକ୍ଷରୁ ପୂର୍ବତନ ମରହଟ୍ଟା ଦୂତ ଶମ୍ଭୁ ଭାରତୀଙ୍କ ନାତି ବୈଷ୍ଣବ ଭାରତୀଙ୍କୁ ପଠାଗଲା। କିନ୍ତୁ ରାଜାଙ୍କ ସୈନ୍ୟ ପରାସ୍ତ ହେଲେ । (କ୍ରମଶଃ)

*ବିଶ୍ୱାତ୍ମା, ଏମ୍-୨୩, ବକ୍ସି ଜଗବନ୍ଧୁ ନଗର, ବିଡିଏ କଲୋନୀ, ଖୋର୍ଦ୍ଧା*

---

## ସାଧାରଣଜ୍ଞାନ ପରୀକ୍ଷା ଉତ୍ତର

୧-ପିନାକ, ୨- ବ୍ରହ୍ମପୁତ୍ର ନଦୀ ଉପରେ ଆସାମର ଗୌହାଟୀଠାରେ ନିର୍ମିତ ହୋଇଛି, ୩-କାଠମାଣ୍ଡୁ, ନେପାଳ, ୪- ହରିଆନା, ୫-ବିହାର, ୬-National Electronic Funds Transfer, ୭- ଉତ୍ତର ପ୍ରଦେଶ, ୮- ଚିତ୍ତରଞ୍ଜନ ଦାସ, ୯- ବଙ୍ଗଳାଦେଶର । ୧୦- ଜାପାନଦେଶର

# ଜୀବନ ଗଢ଼ ତୁମର

ଶ୍ରୀ ବିଷ୍ଣୁ ମୋହନ



ସାଥୀ ମେଳ ହୋଇ ଖେଳିବ ଖେଳ
ପଡ଼ିଆରେ ଯାଇ ହୋଇଣ ମେଳ
ବସି ରହିଲେ ତ ହେବ ଦୁର୍ବଳ
ଖେଳାଖେଳି କରେ ସୁସ୍ଥ, ସବଳ ।
ଦଉଡ଼ା ଦଉଡ଼ି ଅବା କବାଡ଼ି
ଛାଡ଼ି ନିଃଶ୍ୱାସ ଘଡ଼ିକି ଘଡ଼ି
ଝାଳ ଯିବ ତୁମ ଦେହରୁ ବହି
ଏହା ଅଟେ ହିତ ଶରୀର ପାଇଁ ।
ସ୍ୱାସ୍ଥ୍ୟ ରକ୍ଷାରେ ଯା' ଦରକାର
ରହିଅଛି ତାହା ହାତେ ଆମର
ଖେଳୁ ଖେଳୁ ଯେବେ ଗଡ଼ିବ ବେଳା
ଘରକୁ ଫେରିବ ନ କରି ହେଳା ।
ଭଜନ ସାରିକି ପଢ଼ିବ ପାଠ
ପାଠ ପଢ଼ି ହେବ ଉତ୍ତମ ଚାଟ
ଗୁରୁ ଓ ଗୁରୁମା ପାଇବେ ଭଲ
ଘରେ ମାଆ ତୁମ କରିବେ ଗେଲ ।
ରାତ୍ରି ଭୋଜନ ସାରିକି ଯିବ
ବିଛଣାକୁ ଯାଇ ବିଶ୍ରାମ ନେବ
ଭୋର୍‌ରୁ ଉଠିକି ବ୍ୟାୟାମ କରି
ନିତି ଦିନ କାମ ଦେବରେ ସାରି ।

ପାଠବେଳେ ପାଠ ତା' ପରେ ଖେଳ
ସ୍ୱାସ୍ଥ୍ୟ ନିୟମ ମାନିକି ଚଳ
ପାଇ ତୁମେ ଦିନେ ଶାସନ କଳ
ତା ହେଲେ ପାଇବ ପିଲେ ସୁଫଳ ।
ମହାମାନବଙ୍କ ଜୀବନୀ ପଢ଼ି
ସୋପାନ ସୋପାନ ଯିବରେ ଚଢ଼ି
ସେହି ଅନୁସାରେ ଗଢ଼ ଜୀବନ
ତାଙ୍କ ପରି ଦିନେ ହେବ ମହାନ ।

*ଏ ୫୮, କ୍ରିଷ୍ଣାଗାର୍ଡ଼ନ୍-୨, ଖଣ୍ଡଗିରି, ଭୁବନେଶ୍ୱର-୩୦*



# ସାମାନ୍ୟ କଥା

ଶ୍ରୀ କାଞ୍ଚନାରାୟଣ ମହାନ୍ତି

ବିଦ୍ୟାଳୟ ତର୍କ ପ୍ରତିଯୋଗିତାରେ ପ୍ରଥମ ସ୍ଥାନରେ ଥିଲା– ନୀତି । ପାଠ ବି ସେ ଭଲପଢୁଥିଲା । ଜେଜେ ତାକୁ ପଚାରିଲେ– କେଉଁ ବିଷୟରେ ତୁ କହିଲୁ ? ନୀତି କହିଲା– 'ଜଳ ସଂକଟ ପାଇଁ ବିଶ୍ୱସ୍ତରୀୟ ସତର୍କତା' । ତା ସହିତ ସେ ଜେଜେଙ୍କୁ ସେଥିରୁ ଚାରିପଦ ଶୁଣାଇଦେଲା– ଆମ ଜେଜେବାପା କିମ୍ବା ତାଙ୍କ ପୂର୍ବ ସମୟରେ ଥିଲା ନଦୀ, ନାଳ, ପୁଷ୍କରିଣୀ । ବାପାଙ୍କ ସମୟକୁ ଟାଙ୍କି ଆଉ ଟ୍ୟାପ୍ ପାଣି ଏବଂ ଆମ ବେଳକୁ ବୋତଲ, ପାଉଚ୍ ପାଣି । ଠିପି ଖୋଲିଲେ ପାଣି ପିଇଲୁ, ବାହାର ପାଣି ବିଷ ।



ହଠାତ୍ କେତେକ ମୁଣ୍ଡରେ ଠିପିର ଭାବନା ଘାରିହେଲା । ମନେପଡ଼ିଗଲା ଔଷଧ ବୋତଲରେ ଦାଗଦିଆ କାଗଜ ଖଣ୍ଡେ କଟାକଟା ଦାଗ ଦିଆ ଯାଇ ଲାଗି ରହୁଥିଲା । ଯେତିକି ଔଷଧ ଖାଇବା କଥା, ସେଇ ଠିପିରେ ଢାଳି ଖାଇବାକୁ ପଡୁଥିଲା ।

ତା'ର କାରଣ ସେତେବେଳ ଲୋକମାନେ ଅତିମାତ୍ରାରେ ଆଜି ପରି ସଚେତନ ନ ଥିଲେ । ଲୋକମାନଙ୍କ ଘରେ ଚାମଚ ମଧ୍ୟ ନ ଥିଲା । ତେଣୁ ଔଷଧ ବୋତଲର ଠିପି ପରିମାପକର କାମରେ ଲାଗିଥିଲା ।

ପାଣି କେବେ ବଜାରରେ ବିକ୍ରି ହେବ, ତାହା ପଚାଶ ବର୍ଷ ପୂର୍ବରୁ କେହି କେବେ ଭାବି ନ ଥିଲେ । ସେତେବେଳେ ପ୍ରତ୍ୟେକ କୂଅ, ପୋଖରୀ, ନଈପାଣି ପିଇବା ଯୋଗ୍ୟ ଥିଲା । ଶୁଦ୍ଧପାଣି ଥିବା ସତ୍ତ୍ୱେ, 'ପାଣି ପିଇବ ଛାଣି' ବୋଲି ଲୋକଗୀତ ଥିଲା । ତାହା ଥିଲା ବୈଧାନିକ ସତର୍କତା ।

ଏବେ ପାଣି ବୋତଲର ଠିପି ଖୋଲା ଥିଲେ, ସେ ପାଣି ଉପରେ ପିଇବା ଲୋକର ସନ୍ଦେହ ସୃଷ୍ଟି ହେଉଛି ।

ଅନେକ ଖାଦ୍ୟଦ୍ରବ୍ୟ ବଜାରରେ ଉପଲବ୍ଧ ହୋଇଥାଏ, କେବଳ ତାହାକୁ ରାସାୟନିକ ମିଶ୍ରଣ ଦ୍ୱାରା ଦୀର୍ଘ ସମୟ ଧରି ସୁରକ୍ଷିତ ଭାବେ ବୋତଲରେ ରଖିବା ପାଇଁ ବାୟୁ ରୋଧକ ଠିପିର ଉପଯୋଗରୁ ସମ୍ଭବ ହୋଇଥାଏ ।

ପେଟ୍ରୋଲ, କିରାସିନ ଏବଂ ଅନ୍ୟ ଅନେକ ରାସାୟନିକ ପଦାର୍ଥ ରହିଛି, ଯେଉଁଗୁଡ଼ିକୁ ଶକ୍ତ ଭାବେ ବାୟୁ ରୋଧକ ଠିପି ଭାବେ ବ୍ୟବହାର କଲେ ମଧ୍ୟ କିଛି ମାତ୍ରାରେ ତାହା ବାଷ୍ପୀୟ ଅବସ୍ଥାରେ ବୋତଲରୁ ବାହାରିଯାଇଥାଏ । ଠିପି ନ ଥିଲେ ସେ ସବୁ ତରଳ ଅବସ୍ଥାରେ ଅକ୍ଳେଶରେ ଉଡ଼ିଯାଇଥାଏ । ଏ କ୍ଷେତ୍ରରେ ଠିପି ଯୋଗୁଁ ହିଁ ତରଳପଦାର୍ଥର ସଂରକ୍ଷଣ ଓ ଉପଯୋଗ ସମ୍ଭବ ହୋଇଥାଏ । ସବୁପ୍ରକାର ତରଳ ପଦାର୍ଥ ଗୋଟିଏ ପ୍ରକାର ବୋତଲରେ ସଂରକ୍ଷଣ କରାଯାଇପାରେନାହିଁ । କେତେଗୁଡ଼ିଏ କନ୍‌ସେନ୍‌ଟ୍ରେଟେଡ୍ ଏସିଡ୍ ଅଛି, ଯାହାକୁ ସାଧାରଣତଃ କାଚ ବୋତଲ ଭିତରେ ନିବୁଜ୍ ଠିପିଦ୍ୱାରା ସର୍ବସାଧାରଣଙ୍କ ପ୍ରଚଳନଠାରୁ ଦୂରରେ ନିଷିଦ୍ଧ ଭାବରେ ରଖାଯାଇଥାଏ ।



କେତେକ ସୋଡ଼ା ବୋତଲରେ ଠିପିର ସ୍ୱତନ୍ତ୍ରତା ଥାଏ, ଯାହାକୁ ଖୋଲିବା ପାଇଁ ଚାବିର ବ୍ୟବହାର ହୋଇଥାଏ । କାଚର ଗୋଲିଟିଏ କାଚ ବୋତଲ ଭିତରେ ଏଭଳି ଭାବେ ଗ୍ୟାସ୍‌ଦ୍ୱାରା ନିରୁଦ୍ଧ ହୋଇ ରହିଥାଏ ଯେ ତାହାକୁ ଲୁହାର ପ୍ରେସର ଦ୍ୱାରା ଦବାଇ



ଦେଇ ଖୋଲିବାକୁ ହୋଇଥାଏ ।

କେତେକ ଥଣ୍ଡାପାନୀୟ କଂପାନୀ ସେମାନଙ୍କର ବ୍ୟବସାୟକୁ ବଢ଼ାଇବା ପାଇଁ ଠିପିରେ କିଛି ସାଙ୍କେତିକ ଚିହ୍ନ ଅବା ଅକ୍ଷର ଲେଖି ବଜାରକୁ ଛାଡ଼ିଥାନ୍ତି ଏବଂ ସେଥିରେ ଖୁବ୍ ଆକର୍ଷଣୀୟ ପୁରସ୍କାରର ପ୍ରଲୋଭନ ମଧ୍ୟ ରଖିଥାନ୍ତି । ଗ୍ରାହକ ପୁରସ୍କାର ଲୋଭରେ ଠିପି ସଂଗ୍ରହ କରିଥାନ୍ତି । କିଛି ଲୋକ ପୁରସ୍କାର ମଧ୍ୟ ପାଇଥାନ୍ତି ।

ବହୁ ବର୍ଷ ପୂର୍ବରୁ ହୋମିଓପାଥି ଔଷଧ ବୋତଲରେ ସୋଲର ଠିପି ଲାଗି ବନ୍ଦ ହେଉଥିଲା । ଏବେ ସେ କାଚ ବୋତଲ, ସୋଲ ଠିପି ଜାଗାରେ ପ୍ଲାଷ୍ଟିକ୍ ପହଞ୍ଚିସାରିଛି ।



କୋଲ୍ଡଡ୍ରିଙ୍କ୍ ବା ଥଣ୍ଡାପାନୀୟ ପାଇଁ ଚାରିଆଡ଼େ ଆଦର । ଏହି ବୋତଲର ମୁହଁ ଟିଣ ଠିପିରେ ବନ୍ଦ ହୋଇଥାଏ ଏବଂ ଯେତେ ଚେଷ୍ଟା କଲେ ଖୋଲେନାହିଁ । ଏହାକୁ ଖୋଲିବା ପାଇଁ 'ବଟଲ୍ ଓପ୍‌ନର୍' ଦରକାର ହୋଇଥାଏ । ଆଚାର, ସସ୍, ଜୁସ୍, ମୃଦୁପାନୀୟ ବୋତଲମାନଙ୍କରେ ତଥା କେତେକ ଔଷଧ ବୋତଲରେ ପ୍ରେସର୍ ଦିଆଯାଇ ଠିପି ଦିଆଯାଇଥାଏ । ତାହାକୁ 'କ୍ରାଉନ୍ କ୍ୟାପ୍' କୁହାଯାଏ । ପରୀକ୍ଷାଗାରରେ ସ୍ୱତନ୍ତ୍ର ଭାବରେ ରାସାୟନିକ ପଦାର୍ଥର ସୁରକ୍ଷା ପାଇଁ ଯେଉଁ ଠିପି ବ୍ୟବହାର ହୋଇଥାଏ, ତାହାକୁ 'ଫ୍ରକସନ୍ ଫିଟ୍ ପ୍ଲଗ୍' କୁହାଯାଏ ।

ସ୍ପ୍ରେ ବୋତଲ ବିଭିନ୍ନ ସୁବାସିତ ବାସନା ଅତର ବୋତଲ ମୁହଁରେ ଏରୋସଲ୍ ସ୍ପ୍ରେ, ବ୍ୟବହାର କରାଯାଇଥାଏ । ଏହି ବଡ଼ି ସ୍ପ୍ରେ, ମିଷ୍ଟ୍ ଫ୍ଲୁଇଡ୍‌ର ଠିପିକୁ ଚିପିଦେଲେ ତାହା ଶରୀର ବା ପୋଷାକରେ ବିଛୁରିତ



ହୋଇ ପଡ଼ିଥାଏ । ଏହି ଠିପିରେ ସାଧାରଣତଃ ଟ୍ରିଗର୍ସ, ସ୍ପ୍ରେୟାର କ୍ୟାପ୍, ମେଜରିଙ୍ଗ, ଆଟାଚ୍-ମେଣ୍ଟସ୍, ସିଫ୍ଟିଙ୍ଗ୍ ଡିଭାଇସ୍‌ର ବ୍ୟବସ୍ଥା ଥାଏ ।

ଶିଶୁମାନଙ୍କ ଦ୍ୱାରା ବ୍ୟବହାର ହେଉଥିବା ବୋତଲର ଠିପିଗୁଡ଼ିକରେ ସ୍ୱତନ୍ତ୍ର ଧ୍ୟାନ ଦିଆଯାଇଥାଏ । ପିଲାମାନଙ୍କ ଶରୀରକୁ ଯେପରି କୌଣସି ଦୂଷିତ ବସ୍ତୁ, ରାସାୟନିକ ପଦାର୍ଥ, ଘରୋଇ କୀଟନାଶକ ପଦାର୍ଥର ଅଂଶ ସଂକ୍ରମିତ ନ ହୁଏ, ସେଥିପାଇଁ ସି.ଆର୍ ପ୍ୟାକେଜିଙ୍ଗ୍‌ର ଜୀବାଣୁମୁକ୍ତ ଠିପି ବ୍ୟବହାର କରାଯାଇଥାଏ ।

ଆଧୁନିକ ବିଶ୍ୱରେ ୪୦୦ରୁ ଅଧିକସଂଖ୍ୟକ ଠିପି ଉପଯୋଗ ହେଉଅଛି । କେତେକ ଠିପି ଅଛି, ବୋତଲକୁ ନ ଭାଙ୍ଗିଲେ ଠିପି ବାହାରିବ ନାହିଁ । ତାହାକୁ (Inverted Ketchup Bottle) କୁହାଯାଏ । କେତେକ ଠିପି ଥରେ ଖୋଲିଲେ ସେ ଟିଣର ମୂଲ୍ୟ ଶେଷ ହୋଇଯାଏ । ତାକୁ 'ଫ୍ରିକସନ୍ ଫିଟ୍' କୁହାଯାଏ । ରବର ଠିପି, ବଗିଚାରେ କୀଟନାଶକ ବ୍ୟବହାର ପାଇଁ ସ୍ପ୍ରେୟର ଠିପି, ଶିଶୁମାନଙ୍କର ଦୁଧବୋତଲ ପାଇଁ ରବର ନିପିଲ୍ ଠିପି, ମଶା, କୀଟପତଙ୍ଗ ମାରିବା ପାଇଁ ସ୍ପ୍ରେ ଡଷ୍ଟର ଠିପି, ମୁଣ୍ଡବିନ୍ଧା ପାଇଁ ରୋଲ୍ କରୁଥିବା ଗୋଲ୍ ପ୍ଲାଷ୍ଟିକ୍ ଠିପି ।

ଏହିପରି ବିଭିନ୍ନ ଧାତୁ, କାଚ, କାଠ, ପ୍ଲାଷ୍ଟିକ ଠିପି, କ୍ୟାପ. କଭର୍, ଲିଡ୍, ପ୍ଲଗ, ସିଲ୍, କ୍ରାଉନ୍ କର୍କ, ଫ୍ଲିପ୍ ଟପ୍ ନାମରେ ଠିପି ଦେଖିବାକୁ ମିଳିଥାନ୍ତି । ଜିନିଷଟି ଛୋଟ; କିନ୍ତୁ ତାର ଉପଯୋଗ ଅତି ଜରୁରୀ ।

ଭିଏନାରେ ବିଭିନ୍ନପ୍ରକାର ଠିପିଗୁଡ଼ିକୁ ନେଇ ଏକ ଚିତ୍ରିତ ଶୋଭାମୟ ଚିତ୍ରପଟ ପ୍ରଦର୍ଶିତ ହୋଇଛି ।

*ଆଶ୍ରମ, ଶ୍ରୀବିହାର, କଟକ-୮*

# ଦୟାଶୀଳ ଭଗବାନ !

ଶ୍ରୀ ହରୀଶ ଚନ୍ଦ୍ର ପୃଷ୍ଟି



ଘଞ୍ଚ ଅରଣ୍ୟ । ବକ୍ଷସ୍ଥଳରେ କଳକଳ ନାଦରେ ବହି ଯାଉଥାଏ ନଦୀଟିଏ । ନଦୀର ପ୍ରବହମାନ ସ୍ରୋତରେ ନାଆ ଚଳାଇ ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ଥରେ ଏକା ଏକା ଯାତ୍ରା କରୁଥାନ୍ତି ଜଣେ ବନ ବିଭାଗୀୟ ଅଧିକାରୀ । ଲକ୍ଷ୍ୟ ତାଙ୍କର ଅରଣ୍ୟ ମଧ୍ୟରେ ପ୍ରବାହିତ ନଦୀଟିର ଏକ ନକ୍ସା ପ୍ରସ୍ତୁତ କରିବା । ନାଆ ମଧ୍ୟରେ ଆପଣାର ଖାଦ୍ୟ, ପାନୀୟ ମହଜୁଦ ଥାଏ । ନଦୀ ଗର୍ଭରେ ବିରାଟ ବିରାଟ କୁମ୍ଭୀରଙ୍କ ଚଳପ୍ରଚଳ ଦେଖି ତାଙ୍କ ମନରେ ସାମାନ୍ୟ ଭୟ ଉଦ୍ରେକ ହେଲା । ଦୁର୍ଭାଗ୍ୟବଶତଃ ବାଟବଣା ହୋଇ ସେ ଫେରିବା ରାସ୍ତା ଭୁଲିଯାଇଥିଲେ । କେଉଁ ଦିଗରେ ସେ ଗତି କରୁଛନ୍ତି, ତାହା ମଧ୍ୟ ସେ ଜାଣି ପାରୁ ନ ଥାନ୍ତି । ଲକ୍ଷ୍ୟହୀନ ଭାବେ ନୌକା ଚଳାଇବା ଭିତରେ ତାଙ୍କ ପାଖରେ ଗଚ୍ଛିତ ଥିବା ଖାଦ୍ୟ, ପାନୀୟ ଶେଷ ହୋଇଯାଇଥାଏ । ଏବେ ତାଙ୍କର ଏକମାତ୍ର ଚିନ୍ତା ହେଲା, କେମିତି ଏ ପରିସ୍ଥିତିରୁ ମୁକୁଳିବେ, କିପରି ଜୀବନ ବଞ୍ଚାଇବେ ! ଫେରିବାର କୌଣସି ଉପାୟ ତାଙ୍କର ଦୃଷ୍ଟିଗୋଚର ହେଉନଥାଏ । ତଥାପି ସେ ହତୋତ୍ସାହ ହୋଇ ନ ଥାନ୍ତି ।

ମନରେ ସାହସ ବାନ୍ଧି ଅନିର୍ଦ୍ଦିଷ୍ଟଭାବେ ନୌକାଚାଳନା କରୁ କରୁ ହଠାତ୍ ଅଦୂରରେ ତଟଦେଶରେ ଏକ ପାଚିଲା ଫଳଭରା ବୃକ୍ଷ ତାଙ୍କର ଦୃଷ୍ଟି ଆକର୍ଷଣ କଲା । ବୃକ୍ଷର ପାଚିଲା ଫଳ ଖାଇ କ୍ଷୁଧା ମେଣ୍ଟାଇବାକୁ ଅଧିକାରୀ ଜଣକ ଉତ୍ସୁକ ହୋଇପଡ଼ିଲେ । ତୁରନ୍ତ ନଦୀ କୂଳ ଆଡ଼କୁ ସେ ନୌକା ଚାଳନା କଲେ । ନଦୀର ତଟ ଦେଶରେ ନୌକାକୁ ରଖି ଗଛରେ ଚଢ଼ି ସୁସ୍ୱାଦୁ ଫଳ ଖାଇବାରେ ସେ ମଜ୍ଜିଗଲେ । କିଛି ସମୟ ଉତ୍ତାରେ ନଦୀ କୂଳକୁ ଚାହିଁ ସେ ଯାହା ଦେଖିଲେ, ସେଥିରେ ତାଙ୍କର ହୃତ୍ସ୍ପନ୍ଦନ ବନ୍ଦ ହୋଇଗଲା ଭଳି ଅନୁଭବ କଲେ । ସେ ଦେଖିଲେ, ତାଙ୍କର ନୌକାଟି ପାଣି ସୁଅରେ ଭାସି ଭାସି ଅନେକ ଦୂରକୁ ଚାଲିଯାଇଛି ।

ସେ ଗଛରୁ ଓହ୍ଲାଇବା ମାତ୍ରେ ତାଙ୍କୁ ଗ୍ରାସ କରିବା ପାଇଁ ଏକ ବିରାଟକାୟ କୁମ୍ଭୀର ନଦୀ କୂଳରେ ଅପେକ୍ଷା କରିଛି । କୁହାଯାଏ, ଦୁର୍ଭାଗ୍ୟ ଏକା ଆସେ ନାହିଁ, ସାଙ୍ଗସାଥୀ ଧରି ଆସିଥାଏ । ବନ ବିଭାଗ ଅଧିକାରୀଙ୍କ କ୍ଷେତ୍ରରେ ତାହାହିଁ ଘଟିଥିଲା । କୁମ୍ଭୀରଟିକୁ ଡରାଇ ନଦୀ କୂଳରେ ତଡ଼ିବା ଉଦ୍ଦେଶ୍ୟରେ ଆପଣା ରାଇଫଲରୁ ଫାଙ୍କା ଗୁଳି ଚାଳନା କରିବାକୁ ଚିନ୍ତାକରି ଅଧିକାରୀ ଜଣକ କାନ୍ଧରୁ ରାଇଫଲ ବାହାର କରିବାକୁ ଉଦ୍ୟତ ହେଲେ; ମାତ୍ର ଦୁର୍ଭାଗ୍ୟ ! ଅସାବଧାନତାବଶତଃ ରାଇଫଲ୍‌ଟି ଗଛ ଡାଳରେ ବାଜି ନଦୀ ଗର୍ଭରେ ପଡ଼ିଯାଇଥିଲା । ସତେ ଯେମିତି

ସମସ୍ୟାର ପାହାଡ଼ଟି ତାଙ୍କ ଉପରେ ସଂପୂର୍ଣ୍ଣ ଭାଙ୍ଗିପଡ଼ିଲା ! ସେ ଅନୁଭବ କଲେ, ତାଙ୍କ ପାଇଁ ଏଭଳି ଜଟିଳ ପରିସ୍ଥିତିରୁ ମୁକୁଳିବାର ସମସ୍ତ ଦ୍ୱାର ଯେପରି ବନ୍ଦ ହୋଇଗଲା !

ଜୀବନର ଏଭଳି ଘୋର ସଂକଟ କ୍ଷଣରେ ସେ ପ୍ରଥମ କରି ଆକୁଳ ହୃଦୟରେ ଈଶ୍ୱରଙ୍କୁ ଡାକିଲେ । ଜୀବନ ସାରା ସେ ନାସ୍ତିକ ଥିଲେ, ଈଶ୍ୱରଙ୍କ ଅସ୍ତିତ୍ୱକୁ କେବେ ବିଶ୍ୱାସ କରୁ ନ ଥିଲେ । ଏବେ କିନ୍ତୁ ସେ ନିରାଶ୍ରୟ ହୋଇ କାତର କଣ୍ଠରେ ଈଶ୍ୱରଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ । ଆଶ୍ଚର୍ଯ୍ୟର କଥା ! ସତେ ଯେମିତି ଦୟାଶୀଳ ଭଗବାନ ସଙ୍ଗେ ସଙ୍ଗେ ତାଙ୍କ ପ୍ରାର୍ଥନା ଶୁଣିଲେ ! ତାଙ୍କ ଆଖି ସାମନାରେ ଚମତ୍କାର ଘଟଣା ଘଟିଗଲା ।

ହଠାତ୍ ନଦୀ କୂଳରେ ଏକ ଚିତାବାଘକୁ ଦେଖି ଭୟରେ କୁମ୍ଭୀରଟି ପାଣି ଭିତରେ ଅଦୃଶ୍ୟ ହୋଇଗଲା । ନଦୀ ଗର୍ଭରେ ଭାସି ଭାସି ବହୁ ଦୂରକୁ ଚାଲିଯାଇଥିବା ତାଙ୍କ ନାଆଟି ପବନର ଅନୁକୂଳ ସ୍ରୋତରେ ଆପଣାଛାଏଁ ପୂର୍ବସ୍ଥାନକୁ ଫେରିଆସିଲା । ନିର୍ଭୟ ଚିତ୍ତରେ ସେ ଗଛରୁ ଓହ୍ଲାଇ ନାଆରେ ବସିଲାମାତ୍ରେ ଫେରିବାର ଠିକ୍ ବାଟ ତାଙ୍କୁ ଦେଖାଗଲା । ସୁରକ୍ଷିତଭାବେ ସେ ଘରେ ପହଞ୍ଚିଥିଲେ ।

ଏହାପରେ ତାଙ୍କ ଜୀବନର ମୋଡ଼ ସଂପୂର୍ଣ୍ଣ ବଦଳି ଯାଇଥିଲା । ଏହା ପରଠାରୁ ନିରବଚ୍ଛିନ୍ନଭାବେ ୟୁରୋପ ଓ ଆମେରିକା ଭ୍ରମଣ କରି ପ୍ରାର୍ଥନାର ଚମତ୍କାରିତା ସଂପର୍କରେ ପ୍ରଚାର କରିବାରେ ସେ ମନପ୍ରାଣ ଢାଳିଦେଇଥିଲେ । ସେ ଥିଲେ ଜର୍ଜ ମୁଲର୍, ଜଣେ ଇଂରେଜ ବ୍ୟକ୍ତି,ଯାହାଙ୍କୁ ଲୋକେ ଶ୍ରଦ୍ଧାରେ "ପ୍ରାର୍ଥନା ପୁରୁଷ'' ଭାବେ ସମ୍ବୋଧନ କରନ୍ତି ।

*ଉଚ୍ଚ ବିଦ୍ୟାଳୟ, ଅଂଧାରୁଆ ଜଗନ୍ନାଥ ପ୍ରସାଦ, ଖୋର୍ଦ୍ଧା*



# କିଏ ସେ ପାରିବ କହି

ଶ୍ରୀ ଶଶିକାନ୍ତ ବେହେରା

୬- ମଶା ନୁହଁଇ ସେ ନୁହେଁ ଡାଆଁସ
ରକତ ପିଇଲେ ମରେ ତା ଭୋକ ।

୭- ବଇଁଶୀ ପରି ସେ ଗୀତ ଗାଉଛି
ରକତ ପିଇ ତା' ଶୋଷ ମାରୁଛି ।

୮- ଗୋଲ ଗୋଲ ଦୁଇ ଗୋଡ଼ରେ ଚାଲେ
ମୁଣ୍ଡପାଖେ ଦୁଇ ହାତକୁ ମେଲେ
ସେ ହାତରେ ବାନ୍ଧି ଚାରିଗୋଡ଼ିଆ
ପିଠିରେ ବସିଲେ ଭାରି ବଢ଼ିଆ ।

୯- ଫୁଟିଲା ଫୁଟିଲା ବାସିଲା
ଠେଙ୍ଗାରେ ଗୋଡ଼େଇ ପିଟିଲା
କାନ ଧରି ମୁଣ୍ଡ ନଇଁଲା
ଗଳ ଗଳ ପାଣି ବୋହିଲା ।

୧୦- ଧଳା ପତରରେ କାଳିଆ ଭାତ
ଧାଡ଼ି ଧାଡ଼ି ଥୁଆ ଦେଖ ସଙ୍ଗାତ
ସେ ଭାତକୁ ଚାହିଁ ମୂରୁଖ ଜ୍ଞାନୀ
ନ କହି ପାରିଲେ ହବ ଅଜ୍ଞାନୀ ।

୧୧- ମଇ ବୁଲୁଥିଲା ଦାନ୍ତ ଦେଖେଇ
କଚ କଚ କାଟେ ଜାଆଁଳା ଭାଇ
ରମ୍ପ ରମ୍ପ ଚାଞ୍ଚି ମାରେ ତା ଶୋଷ
ଜଙ୍ଗଲଟା ସଫା ନାହିଁ ତ ଘାସ ।

୧୨- ଅସରା ଅସରା ମେଘ ବରଷେ
ଛତା ଧରିଥିଲା ପାଳ ଗଦାରେ ।

(ଉତ୍ତର ୩୯ ପୃଷ୍ଠାରେ)

# ନିଜ ଦେଶ ପାଇଁ ସମ୍ମାନ

ଏବେ କିଛି ଦିନ ତଳେ ମତେ ମସ୍କୋ (ରୁଷ୍) ଯିବାର ଅବସର ମିଳିଥିଲା । ଯେଉଁଦିନ ମୁଁ ପାର୍କ ବୁଲିବାକୁ ପହଞ୍ଚିଲି, ସେଦିନ ରବିବାର ଥିଲା । ଗରମ ଦିନରେ ବି ସେ ସ୍ଥାନ ମୁଗ୍ଧକର ଥିଲା । ଥଣ୍ଡା ଓ ଝିପ୍‌ଝିପ୍ ବର୍ଷା ହେଉଥିଲା ।

ମୁଁ ଗୋଟେ ଛତା ତଳେ ଠିଆହୋଇ ସେ ସ୍ଥାନର ସୁନ୍ଦରତାକୁ ଆନନ୍ଦରେ ଉପଭୋଗ କରୁଥିଲି । ସେତେବେଳେ ମୋର ଆଖି ଏକ ନବବିବାହିତ ଯୋଡ଼ି ଉପରେ ଲାଖିଗଲା । ପିଙ୍ଗଳ ବର୍ଣ୍ଣର ବାଳ ଓ ନୀଳ ଆଖି ଥିବା କନ୍ୟାର ବୟସ କୋଡ଼ିଏ ବର୍ଷ ପାଖାପାଖି ଥିଲା । ସିଏ ବହୁତ ସୁନ୍ଦର ଦିଶୁଥିଲା । ବରଟି ପ୍ରାୟ ସମବୟସ୍କ । ବହୁତ ସୁନ୍ଦର ଯୋଡ଼ି ସତରେ ! କିନ୍ତୁ ବିଶେଷ କଥାଟି ହେଲା– ସେ ଯୁବା ବରଟି ସୈନ୍ୟ ପୋଷାକ ପିନ୍ଧିଥିଲା । କନ୍ୟା ମୋତି ଆଉ ଲେସ୍‌ରେ ସଜାଯାଇଥିବା ସାର୍ଟିନ୍ କନାର ପୋଷାକ ପିନ୍ଧିଥିଲା । ଦୁଇ ଜଣ ଯୁବତୀ ତାର ଗାଉନ୍‌ର ପଛ ପଣତକୁ ଧରି ରଖିଥିଲେ, ଯେପରକି ତାହା ତଳେ ଘୁସୁରି ମଇଳା ନ ହୋଇଯାଉ ।

ସେମାନେ ହାଲୁକା ବର୍ଷାରେ ଭିଜି ନ ଯାଆନ୍ତୁ, ସେଥିଲାଗି ଦୁଇ ଯୁବକ ଛତା ଖୋଲି ତାଙ୍କ ସାଥିରେ ଥିଲେ । କିଶୋରୀ କନ୍ୟା ହାତରେ ଗୋଟେ ଫୁଲଗୋଛା ଧରିଥିଲା ଆଉ ଯୁବକ ବରର ଦୁଇ ହାତରେ ଯୁଦ୍ଧ ହତିୟାର୍ ଥିଲା । ତାହା ଥିଲା ମୋ ଲାଗି ଅଦ୍ଭୁତ ଦୃଶ୍ୟ । ମତେ ଏକଥା ବିଚିତ୍ର ଲାଗିଲା କି ବିବାହର ତୁରନ୍ତ ପରେ ପରେ ଏମାନେ ବର୍ଷାରେ ଭିଜି ଭିଜି ଏ ପାର୍କକୁ ଆସିବାର କି କାରଣ ଥାଇପାରେ ! ସେମାନେ ନିଶ୍ଚିତ ଭାବରେ ଏକ ବୈବାହିକ ସ୍ଥଳକୁ ଯାଇପାରିଥାନ୍ତେ । ମୁଁ ଦେଖିଲି ଯେ ସେମାନେ ସବୁ ସ୍ମାରକର ପାଖରେ ପହଞ୍ଚି ଡାଏସ୍ ଉପରେ ପୁଷ୍ପଗୁଚ୍ଛକୁ ରଖିଲେ, ମୌନରେ ଠିଆହୋଇ ନତମସ୍ତକ ହେଲେ ଓ ତା'ପରେ ଧୀରେ ଧୀରେ ସେ ସ୍ଥାନରୁ ଅପସରିଗଲେ ।

ତା'ହେଲେ ସେଠି କ'ଣ ହେଉଛି, ମୁଁ ଏ କଥା ଜାଣିବାକୁ ଉତ୍ସୁକ ଥିଲି । ମୁଁ ପାଖରେ ଠିଆ ହୋଇଥିବା ଏକ ବୟସ୍କ ବ୍ୟକ୍ତିଙ୍କୁ ଏ ଘଟଣା ବିଷୟରେ ପ୍ରଶ୍ନକଲି । ସେହି ବ୍ୟକ୍ତି ମୋର ଶାଢ଼ି ଉପରେ ଦୃଷ୍ଟି ପକାଇ ପଚାରିଲେ କି ମୁଁ କ'ଣ ଭାରତୀୟ ? ମୁଁ ଉତ୍ତରଦେଲି, "ମୁଁ ଏକ ଭାରତୀୟ ।" ଏଥର ଆମର ବାର୍ତ୍ତାଳାପ ବହୁତ ସୌହାର୍ଦ୍ଦ୍ୟପୂର୍ଣ୍ଣ ହୋଇଗଲା । ତେଣୁ ଅବସରର ଲାଭ ଉଠାଇ ମୁଁ କିଛି ପ୍ରଶ୍ନ ପଚାରିବାକୁ ନିଷ୍ପତ୍ତି କଲି ।

'ଓହୋ, ମୁଁ ବିଦେଶରେ କାମ କରିଛି ।" ସିଏ ଉତ୍ତରରେ କହିଲେ ।

"କ'ଣ ଆପଣ ମତେ ବୁଝାଇପାରିବେ କି ଏଇ ନବଦମ୍ପତି ତାଙ୍କର ବିବାହର ଦିନ ଏହି ଯୁଦ୍ଧ ସ୍ମାରକୀକୁ କାହିଁକି ଆସିଛନ୍ତି ?"

"ଏହା ରୁଷୀୟ ପରମ୍ପରା । ଏ ଦେଶରେ ବିବାହ ଉତ୍ସବ ପ୍ରାୟ ଶନିବାର କିମ୍ବା ରବିବାରରେ ଅନୁଷ୍ଠିତ ହୁଏ, ପାଣିପାଗ ଯାହା ହୋଇଥାଉ ପଛେ । ବୈବାହିକ କାର୍ଯ୍ୟାଳୟରେ ରେଜିଷ୍ଟରରେ ଦସ୍ତଖତ କଲାପରେ, ବିବାହିତ ଯୋଡ଼ି ସର୍ବପ୍ରଥମେ ମହତ୍ତ୍ୱପୂର୍ଣ୍ଣ ରାଷ୍ଟ୍ରୀୟ ସ୍ମାରକଙ୍କୁ ଦର୍ଶନ କରନ୍ତି । ଏଇ ଦେଶରେ ପ୍ରତ୍ୟେକ ଯୁବକ କମ୍ ସେ କମ୍ କିଛି ବର୍ଷ ସେନାରେ କାମ କରିବାକୁ ବାଧ୍ୟ । ତା'ର ସାମର୍ଥ୍ୟ ଓ ଯୋଗ୍ୟତା କିଛି ହୋଇଥାଉ ନା କାହିଁକି ବିବାହ ସମୟରେ ଯୁବକ ସାମରିକ ପୋଷାକ ପିନ୍ଧିବାକୁ ବାଧ୍ୟ ।"

"ଏପରି କାହିଁକି ?"



"ଏହା କୃତଜ୍ଞତାର ପ୍ରତୀକ । ଆମର ପୂର୍ବଜମାନେ ରୁଷ ଲଢ଼ିଥିବା ଯୁଦ୍ଧରେ ଜୀବନ ବଳିଦାନ ଦେଇଛନ୍ତି । ସେଥିରେ ଆମେ କିଛିରେ ବିଜୟ ପାଇଛୁ ଓ କିଛି ପରାସ୍ତ ହୋଇଛୁ; କିନ୍ତୁ ତାଙ୍କର ବଳିଦାନ ସବୁବେଳେ ଦେଶ ଲାଗି ହୋଇଛି । ନବବିବାହିତ ଏହା ସ୍ମରଣ ରଖିବା ଆବଶ୍ୟକ ଯେ ପୂର୍ବଜଙ୍କର ଏହି ବଳିଦାନର କାରଣରୁ ସେମାନେ ଏକ ଶାନ୍ତିପୂର୍ଣ୍ଣ ସ୍ୱତନ୍ତ୍ର ରୁଷିଆରେ ରହୁଛନ୍ତି । ତେବେ ତାଙ୍କର ଆଶୀର୍ବାଦ ନେବାକୁ ଏଠାକୁ ଆସନ୍ତି ।

ଦେଶପ୍ରେମ ବିବାହ ସମାରୋହଠାରୁ ବହୁ ଗୁଣ ମହତ୍ତ୍ୱପୂର୍ଣ୍ଣ । ଆମେ ବୟସ୍କ ସଦସ୍ୟମାନେ ଏଇ କଥା ଉପରେ ଜୋର୍ ଦେଉ । ତା'ପରେ ବିବାହ ଉତ୍ସବ ମସ୍କୋ ସେଣ୍ଟ୍ ପିଟରବର୍ଗ କିମ୍ବା ରୁଷର ଯେକୌଣସି ଖଣ୍ଡରେ ହୋଇଥାଉ, ବିବାହ ଉତ୍ସବ ଦିନ ନବବିବାହିତ ଯୁଗଳ ଯେକୌଣସି ଯୁଦ୍ଧ ସ୍ମାରକୀକୁ ନିଶ୍ଚୟ ହିଁ ଯାଆନ୍ତି । ସେହି ଅବସରରେ ମୋର ବିବ୍ରତକର ବିଚାର ଆସିଲା ଯେ ଆମେ ଭାରତୀୟମାନେ ଆମର ପିଲାମାନଙ୍କୁ କିପରି ଶିକ୍ଷା ଦେଇଛୁ ! କ'ଣ ଆମେ ଭାରତୀୟମାନେ ଜୀବନର ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଦିବସରେ ଆମର ସହିଦ୍‌ଙ୍କୁ ସ୍ମରଣ କରିବାର ସୌଜନ୍ୟ ଦର୍ଶାଇବାକୁ ସମର୍ଥ ? ଆମେମାନେ ସେହିଦିନ ଶାଢ଼ି ଓ ଆଭୂଷଣ କରିବାରେ ବ୍ୟସ୍ତ ରହୁ । ଭୋଜନ, ବ୍ୟଞ୍ଜନର ବିଶାଳ ମେନୁ ପ୍ରସ୍ତୁତ କରୁଥାଉ ଆଉ ଡିସ୍କୋ ବାଜାରେ ହର୍ଷ ଉଲ୍ଲାସ କରୁ ।

ଏହିସବୁ କଥା ବିଷୟରେ ଭାବି ମୋର ଚକ୍ଷୁ ଅଶ୍ରୁପୂର୍ଣ୍ଣ ହୋଇଗଲା । ଆଉ ମୋତେ ଲାଗିଲା– ଆମମାନଙ୍କୁ ରୁଷମାନଙ୍କଠାରୁ ଶିକ୍ଷା ନେବା ଆବଶ୍ୟକ । ଆମେ ବି ଆମର ଦେଶ ଲାଗି, ଆମର ବର୍ତ୍ତମାନ ଓ ଭବିଷ୍ୟତ ଲାଗି ଜୀବନ ଦେଇଥିବା ସହିଦ୍‌ମାନଙ୍କ ଲାଗି ଶ୍ରଦ୍ଧା, ଭକ୍ତି ଦେଖାଇପାରନ୍ତେ ଯଦି........ ।

(ସଂଗ୍ରାହକ-ରବିନାରାୟଣ ମହାପାତ୍ର)

## ନୀତିବାଣୀ

❋ ମଣିଷ କରିଥିବା ବହୁ ଆବିଷ୍କାର ମଧ୍ୟରୁ ଅର୍ଥ ଏକ ନିକୃଷ୍ଟ ଆବିଷ୍କାର । ତଥାପି ମଣିଷକୁ ଚିହ୍ନିବା ତଥା ପରିଚୟ ପାଇବାରେ ଅର୍ଥ ଏକ ବିଶ୍ୱାସୀ ମାଧ୍ୟମ ଭାବେ କାମ କରିଥାଏ ।

❋ ଯାହା ମନୁଷ୍ୟ ସମାଜକୁ ଶାନ୍ତି, ମୈତ୍ରୀ, ନୈତିକତା, ସମତା ଓ ପ୍ରଗତିଶୀଳ ଭାବନା ଦ୍ୱାରା ଗୋଟିଏ ସୂତ୍ରରେ ବାନ୍ଧି ରଖେ, ତାହା ହିଁ ଧର୍ମ । ଆପଣଙ୍କର ଧର୍ମ ଏହା କରୁଛି ତ ?

❋ ଭୁଲିଯାଆନ୍ତୁ, ଯାହା ଆପଣଙ୍କୁ ଆଘାତ ଦେଉଛି; ମାତ୍ର ଯେଉଁଥିରେ ଆପଣ ଶିକ୍ଷା ପାଇଛନ୍ତି, ତାକୁ କେବେ ଭୁଲନ୍ତୁ ନାହିଁ । (ସଂଗୃହୀତ)

# ମିଛ ଭକ୍ତି

ଶ୍ରୀ ବାଇଧର ନାୟକ

ବିଜୟବାବୁଙ୍କ ବନ୍ଧୁ ରାଜୁବାବୁ । ବିଜୟବାବୁ ଦିନେ ସକାଳୁ ସକାଳୁ ଆସି ରାଜୁବାବୁଙ୍କ ଘରେ ପହଞ୍ଚିଗଲେ । ବିଜୟବାବୁ ରାଜୁବାବୁଙ୍କୁ ଖୋଜିବାରୁ ତାଙ୍କ ଝିଅ ଲିଲି କହିଲା, "ବାବା ବଜାରକୁ ପରିବା ପାଇଁ ଯାଇଛନ୍ତି । ବୋଉ ତ ଠାକୁର ପୂଜାରେ ବ୍ୟସ୍ତ । ଦୁଇଘଣ୍ଟା ଯାଏଁ ସେ ଠାକୁର ଘରୁ ବାହାରିବେ ନାହିଁ । ଆପଣ ବସିଥାନ୍ତୁ, ମୁଁ ଚା' କରି ଆସୁଛି ।"

ଏହି କଥା କହି ଲିଲି ଚାଲିଗଲା । ବିଜୟବାବୁ ଅନେକଥର ଶୁଣିଛନ୍ତି ଯେ ତାଙ୍କ ସ୍ତ୍ରୀ ଭକ୍ତିମତୀ ନାରୀ । ଭାରି ଦୟାଳୁ । ନିରାମିଷ ଆହାରୀ । ପୁରାଣ, ଗୀତା ତାଙ୍କ ମୁହଁରେ । ଏମିତି ଭାବୁଥିବା ସମୟରେ ଲିଲି ଆଣି ଚା'କପ୍‌ଟାକୁ ତାଙ୍କ ହାତକୁ ବଢ଼ାଇଦେଲା । ବିଜୟବାବୁ ଗୋଟିଏ ଢୋକ ଚା' ପାଇଛନ୍ତି କି ନାହିଁ, ଗୋଟିଏ ବିଲେଇର କରୁଣ ଚିତ୍କାର ଶୁଭିଲା । ତା'ପରେ ରକ୍ତାକ୍ତ ଅବସ୍ଥାରେ ବିଲେଇଟି ଘୁସୁରି ଘୁସୁରି ଆସି ବିଜୟବାବୁଙ୍କ ପାଖରେ ପଡ଼ିଗଲା । ଚାହୁଁ ଚାହୁଁ ତା ପ୍ରାଣବାୟୁ ଉଡ଼ିଗଲା । ଏପରି କରୁଣ ଦୃଶ୍ୟ ଦେଖି ବିଜୟବାବୁଙ୍କ ଆଖିରୁ ଟପଟପ ଲୁହ ଖସିପଡ଼ି ଭାଙ୍ଗିଗଲା । ଦୁଇଟି କୁନି ବିଲେଇଛୁଆ ମ୍ୟାଉଁ ମ୍ୟାଉଁ ହୋଇ ମୃତ ମାଆ ବିଲେଇ ପାଖକୁ ଧାଇଁ ଆସିଲେ । ରକ୍ତ ଜୁଡୁବୁଡୁ ମାଆର କ୍ଷୀରକୁ ଚୁଁ ଚୁଁ କରି ପିଇ ଯାଉଥାନ୍ତି ।



ଏପରି ଘଟଣା କେମିତି ଘଟିଲା ଭାବୁଥାନ୍ତି ବିଜୟବାବୁ । ଏହି ସମୟରେ ଲିଲି ବି ଧାଇଁଆସି ଏ ଦୃଶ୍ୟ ଦେଖି କିଛି ବୁଝିପାରିଲା ନାହିଁ । ଏଥର ରାଜୁବାବୁଙ୍କ ସ୍ତ୍ରୀ ପଦ୍ମାବତୀ ଦେବୀ ଧାଇଁଆସି ରାଗରେ କହିଲେ, "ମରିଛି ନା ଏ ବିଲେଇ ? ଠାକୁରଙ୍କ ପାଇଁ କ୍ଷୀର ଟିକିଏ ରଖିଲେ ପିଇଯାଉଛି । ସବୁଦିନ ମୋତେ ଠକାଉଛି ଏ ବିଲେଇ ।"

ଲିଲି ପଚାରିଲା, "ବୋଉ ! ବିଲେଇଟାକୁ କେମିତି ମାରିଲୁ ?" ପଦ୍ମା ରାଗରେ କହିଲେ, "ଧାରୁଆ ଟାଙ୍ଗିଆଟା ତା' ଉପରକୁ ଫିଙ୍ଗିଲି । ଟାଙ୍ଗିଆରେ ତା ପେଟଟା କଟିଗଲା । ମରୁ ସେ ଚାଉକା ବିଲେଇ ।" ଏହି କଥା କହି ପଦ୍ମା ଠାକୁର ଘରକୁ ଚାଲିଲେ । ଲିଲି ଛୋଟ ବିଲେଇ ଛୁଆ ଦୁଇଟିଙ୍କୁ ଧରି କ'ଣ କରିବ ଭାବୁଥାଏ । ବିଜୟବାବୁ ବି ଏହି ସମୟରେ କ'ଣ କରିବେ ଭାବୁଥାନ୍ତି । ବନ୍ଧୁ ରାଜୁବାବୁଙ୍କଠାରୁ ସେ ଶୁଣିଥିଲେ ଯେ ପଦ୍ମା ଭାରି ଦୟାଳୁ । ପଶୁପକ୍ଷୀଙ୍କୁ ସେ ଭଲପା'ନ୍ତି । ଏଇ କ'ଣ ତାଙ୍କର ଦୟାଳୁପଣ ?

ଏପରି କରୁଣ ଦୃଶ୍ୟ ଦେଖିବା ପାଇଁ କିଛି ଲୋକ ରୁଣ୍ଡ ହୋଇପଡ଼ିଲେ । ଯିଏ ଦେଖିଲା ପଦ୍ମା ଭାଉଜଙ୍କୁ ଛି'ଛାକର କହିଲେ । ଧୀରେ ଧୀରେ ଏପରି ଦୃଶ୍ୟ ଦେଖିବା ପାଇଁ ଗହଳ ଲାଗିଗଲା । ବିଜୟବାବୁ ସେ ସ୍ଥାନ ଛାଡ଼ି ପଳାଇଆସିଲେ । ବିଜୟବାବୁ ଭାବୁଥାନ୍ତି–ପଦ୍ମାଭାଉଜଙ୍କ ପରି ଠାକୁର ଭକ୍ତମାନଙ୍କ କଥା । ନିଜ ଭିତରେ ଏତେ କ୍ରୋଧ, ଏତେ ଈର୍ଷା

ରଖି ମିଛରେ ଠାକୁରଙ୍କୁ ପୂଜା କରିବାର ଲାଭ କ'ଣ ? ବିଲେଇର ପ୍ରକୃତି ତ ଟାଉକା ହେବା । ଠାକୁର କ'ଣ କ୍ଷୀର ପିଅନ୍ତି ? ବିଲେଇ ଭିତରେ କ'ଣ ଠାକୁର ନାହାନ୍ତି ? ଏପରି ମନ୍ଦ କାମ କରି ଠାକୁର ପୂଜା କଲେ କ'ଣ ସୁଫଳ ମିଳିବ ? ଆଉ ଭାବିପାରିଲେନି ବିଜୟବାବୁ । ତାଙ୍କ କାନରେ ସେଇ କୁନି ବିଲେଇଙ୍କର ଅସହାୟ ମ୍ୟାଉଁ ମ୍ୟାଉଁ ଶବ୍ଦ ଶୁଭିଯାଉଥାଏ । ମନଦୁଃଖରେ ଘରେ ପହଞ୍ଚିଲେ ବିଜୟବାବୁ । ତାଙ୍କ ସ୍ତ୍ରୀ ଠିକ୍ ସେହି ସମୟରେ ଗାଧୋଇ ଠାକୁରପୂଜା କରିବାକୁ ଯାଉଥାନ୍ତି । ସେ ବିଜୟବାବୁଙ୍କୁ ପଚାରିଲେ, "କ'ଣ ରାଜୁବାବୁଙ୍କ ଦେଖା ପାଇଲ ନାହିଁ କି ?"



ବିଜୟବାବୁ ସବୁ କଥା କହିଲେ । ତାଙ୍କ ସ୍ତ୍ରୀ ଏପରି କଥା ଶୁଣି ମନ କଷ୍ଟ କଲେ । ବିଜୟବାବୁ କହିଲେ, "ବୁଝିଲ ରମା ! ଆମ ଭିତରେ ଅନେକ ଖରାପ କଥା ରହିଛି । ଯେଉଁ ଖରାପ କଥାକୁ ବାହାର କରିଦେବା ପାଇଁ ଆମେ ଠାକୁରଙ୍କୁ ପୂଜା କରୁଛେ । ଭଲ ପଥରେ ଚାଲିବା ପାଇଁ, ଭଲରେ ବଂଚିବା ପାଇଁ ବା ଆମର ମଙ୍ଗଳ ପାଇଁ ଆମେ ଘଣ୍ଟା ଘଣ୍ଟା ଧରି ପୂଜା କରୁ । ଅନେକ ଧୂପ ଜାଳନ୍ତି । ଅନେକ ଫୁଲ ଠାକୁରଙ୍କୁ ଦିଅନ୍ତି । ଅନେକ ଶ୍ଳୋକ ଉଚ୍ଚାରଣ କରନ୍ତି । ଏ ସବୁର ଯଥାର୍ଥତା କିଛିନାହିଁ । ଯଦି ମନ ଭିତରେ ଭକ୍ତିଭାବ ନାହିଁ କି ସେବା କରିବାର ଭାବ ନାହିଁ, ତେବେ ଲୋକଦେଖାଣିଆ ପୂଜାର ଫଳ କିଛି ମିଳେନା । ଅନେକ ଲୋକ ଏମତି ଘଣ୍ଟା ଘଣ୍ଟା ନାଳିପାଟ ପିନ୍ଧି ଠାକୁର ଘରେ ସକାଳୁ ପଶି ଦିନ ନଅଟାକୁ ବାହାରନ୍ତି, ହେଲେ ନିଜ କର୍ମକୁ ଆସିଲେ ଚୋରି କରନ୍ତି । କଳହ ଲଗାଇ ଦିଅନ୍ତି । ଦୁର୍ନୀତି କରନ୍ତି ଓ ପର ଧନକୁ ହାତେଇନେଇ ବଡ଼ଲୋକ ହୁଅନ୍ତି । ମନରେ ମନ୍ଦଭାବ ରଖି ପଦ୍ମାଭାଉଜଙ୍କ ପରି ପୂଜା କରିବନି । ଏମିତି ଠାକୁର ପୂଜାରେ ଠାକୁର ତୋଷ ନ ହୋଇ ରୋଷ କରନ୍ତି ।

*ପରମାନନ୍ଦପୁର, ବାହାବଳପୁର, ତିହିଡ଼ି, ଭଦ୍ରକ,*



ରୋଗୀ– ମୋର ଏଇଟା ପ୍ରଥମ ଅପରେସନ୍
ଡାକ୍ତରବାବୁ ! ତେଣୁ ଭାରି ଭୟ ଲାଗୁଛି ।
ଡାକ୍ତର– ତୁମକୁ କେମିତି ଲାଗୁଥିବ ମୁଁ ଜାଣିପାରୁଛି,
କାରଣ ତୁମେ ମୋର ପ୍ରଥମ ରୋଗୀ ।

ଜଣେ ଲୋକ ଦୋକାନରୁ ଘଡ଼ିଟିଏ କିଣି ସାରି ଦୋକାନୀଙ୍କୁ ପଚାରିଲେ–ଆଜ୍ଞା, ଏଥିରେ କେତେବେଳେ ଚାବି ଦେବି ?
ଦୋକାନୀ– ମନେକରନ୍ତୁ ଆଜି ସକାଳ ୭ଟାରେ ଦେଲେ । କାଲି ପୁଣି ଠିକ୍ ସେଇ ୭ଟାରେ ଦେବେ ।
କ୍ରେତା– କାଲି କେତେବେଳେ ୭ଟା ବାଜିବ, ଜାଣିବି କେମିତି ? ଆମ ଘରେ ଯେ ରେଡିଓ ନାହିଁ ।



ଶୁଭମ୍ ନାୟକ, ଗଣପତି ଶିଶୁ ବିଦ୍ୟାମନ୍ଦିର, ଷ୍ଟାଣ୍ଡାର୍ଡ-୬




ପୂର୍ବକାଳରେ ଯେତେବେଳେ ବହିସବୁ ଛାପାଖାନାରେ ଛପା ନହୋଇ ତାଳପତ୍ରରେ ଲେଖାଯାଉଥିଲା, ସେତେବେଳେ ମଧ୍ୟ ଭାଷାର ଶୁଦ୍ଧତା ଉପରେ ଗୁରୁତ୍ୱ ଦିଆଯାଉଥିଲା । ଲେଖନଦ୍ୱାରା ତାଳପତ୍ରରେ ଲେଖୁ ଲେଖୁ ଭୁଲ୍ ହୋଇଗଲେ ତାକୁ କାଟି ସଂଶୋଧନ କରିବା ସହଜ ନ ଥିଲା । ତେଣୁ ଲିଖନକାର ପାଠକକୁ ସତର୍କ କରାଇ କହୁଥିଲେ, ''ଶୁଦ୍ଧ ଅଶୁଦ୍ଧ ମିଳାଇ ଗାଇବ, ଲିଖନକାର ଦୋଷ ନ ଧରିବ ।''

ଛାପାକଳ ଆସିବାପରେ ବହିସବୁ ଛାପାଯନ୍ତ୍ରରେ ଛପାହେଲା । ପ୍ରୁଫ୍ ସଂଶୋଧନ ଦୋଷରୁ ଓ ଅନ୍ୟାନ୍ୟ କାରଣରୁ ବହିରେ ଯେଉଁ ଭୁଲ୍‌ସବୁ ରହିଯାଉଥିଲା, ତାର ଶୁଦ୍ଧ ରୂପ ଦେଇ ଖଣ୍ଡେ ଖଣ୍ଡେ ଶୁଦ୍ଧିପତ୍ର ବହି ମୂଳରେ ବା ଶେଷରେ ଯୋଡ଼ି ଦିଆଯାଉଥିଲା । ଏପରି କେତେକାଳ ଚାଲିବାପରେ ଏବେ କେଜାଣି କାହିଁକି 'ଶୁଦ୍ଧିପତ୍ର' ଲଗାଇବା ବ୍ୟବସ୍ଥାକୁ କେହି ପସନ୍ଦ କରୁନାହାନ୍ତି । ଆଜିକାଲି ବହିମାନଙ୍କରେ 'ଶୁଦ୍ଧିପତ୍ର' ପ୍ରାୟ ଦିଆଯାଉନାହିଁ । ବାସ୍ତବରେ ତାହା ବିଶେଷ କିଛି କାର୍ଯ୍ୟରେ ଆସେନାହିଁ । ଏହାଦ୍ୱାରା ଲେଖକ ନିଜର ନିର୍ଦ୍ଦୋଷତା ପ୍ରମାଣ କରିବାକୁ ଚେଷ୍ଟାକରନ୍ତି ସତ; କିନ୍ତୁ ପ୍ରେସ୍‌ର ଅପଖ୍ୟାତି ବଢ଼ିଯାଏ । ଯେଉଁ ବହିରେ ଅଶୁଦ୍ଧି ଖୁବ୍ ବେଶି ଥାଏ, ସେଠି 'ଶୁଦ୍ଧିପତ୍ର' ନ ଦେବା ହିଁ ଭଲ । ଏପରି ବହି ଶୁଦ୍ଧିପତ୍ର ମିଳାଇ ପଢ଼ିବା ପାଠକପକ୍ଷରେ ବଡ଼ ବିରକ୍ତିକର ।

ତା'ଛଡ଼ା, ବହିରେ ଯଦି ଅଙ୍କ ଭୁଲ୍ ଥାଏ, ତାହାହେଲେ ଖଣ୍ଡେ କାଗଜରେ ଶୁଦ୍ଧିପତ୍ର ଦେଇହୁଏ, ମାତ୍ର 'କମଳଯାକ ବାଳ' ହୋଇଥିଲେ କେତେଖଣ୍ଡ କାଗଜ ଯୋଡ଼ିବ ? ପୃଷ୍ଠା ବଢ଼ିଲେ ତ ଛାପାଖର୍ଚ୍ଚ ବଢ଼ିଯିବ ।

ତେଣୁ ବର୍ତ୍ତମାନ ଧାନକ୍ଷେତରେ ବାଲୁଙ୍ଗା ଏତେ ମାଡ଼ିଗଲାଣି ଯେ, ତାକୁ ନ ବାଛି ସେମିତି ଛାଡ଼ି ଦିଆଯାଉଛି । ଏ ତ ଗଲା ବହି କଥା, ପତ୍ରପତ୍ରିକା ମଧ୍ୟ ଏ ଦୋଷରୁ ମୁକ୍ତ ନୁହନ୍ତି । ଏ ସବୁଥିରେ 'ଶୁଦ୍ଧିପତ୍ର'ଦେବା କଥା କିଏ କାହିଁକି କଳ୍ପନା କରିବ ? ସମସ୍ତେ ପାଠକ ଉପରେ ଛାଡ଼ି ଦେଉଛନ୍ତି, ଯେପରି ପୋଥିର ଲିଖନକାର କହୁଥିଲେ– 'ଶୁଦ୍ଧ ଅଶୁଦ୍ଧ ମିଳାଇ ପଢ଼ିବ ।'

କିନ୍ତୁ ଶୁଦ୍ଧ କିଏ ଅଶୁଦ୍ଧ କିଏ ପାଠକ ଜାଣିଲେ ତ ? ଶିଶୁ ପାଠକମାନେ କ'ଣ ଏ କଥା ଜାଣିପାରିବେ ? ସେ ଯାହା ପଢ଼ନ୍ତି, ତାକୁ ଗ୍ରହଣ କରନ୍ତି । ବହି ଓ ପତ୍ରପତ୍ରିକା ବ୍ୟତୀତ ସେମାନେ ସଭାସମିତିରେ, ରେଡିଓରେ, ଟି.ଭି.ରେ, ପ୍ରାଚୀରପତ୍ରରେ ଅନେକ କଥା ଅଧିକ ମନଦେଇ ଶୁଣୁଛନ୍ତି ଓ ଦେଖୁଛନ୍ତି । ସେଦିନ ଆକାଶବାଣୀର ସମ୍ବାଦପାଠକ କହୁଥିଲେ 'ସଂଯମତା', 'ଉତ୍କର୍ଷତା' । 'ସଂଯମ' ଓ 'ଉତ୍କର୍ଷ' ଦୁଇଟି ବିଶେଷ୍ୟ ପଦ । ସେଥିରେ ପୁଣି 'ତା' ପ୍ରତ୍ୟୟ ଯୋଗ କାହିଁକି ? ସମ୍ବାଦପତ୍ରରେ ଏଭଳି ବହୁ ଅଶୁଦ୍ଧି ଦେଖିବାକୁ ମିଳୁଛି । ଏସବୁ ପାଇଁ କଣ 'ଶୁଦ୍ଧିପତ୍ର' ପ୍ରସ୍ତୁତ କରାଯାଇପାରେ ?

ଶବ୍ଦଧନ୍ଦା ସ୍ତମ୍ଭରେ 'ନିଷ୍ଠୁର'ର ପ୍ରତିଶବ୍ଦ ମଗାଯାଇଥିଲା । ଉଦ୍ଦିଷ୍ଟ ଶବ୍ଦଟି 'କ୍ରୁର', ମାତ୍ର ଶତକଡ଼ା

୭୫ ଜଣ ଉତ୍ତରଦାତା ଭୁଲ ଲେଖିଥିଲେ । କେହି ଲେଖିଥିଲେ 'କ୍ରୁର', କେହି ବା 'କୃର' । ଆମେ ଏ ବିଷୟ ବାରମ୍ବାର ଆଲୋଚନା କରୁଛୁ ବୋଲି କେହି କେହି ଭାବୁଥିବେ । କିନ୍ତୁ ଆମେ ବିଚଳିତ ନ ହୋଇ ଆମ କର୍ତ୍ତବ୍ୟ କରିଯାଉଛୁ । ଆମର ବିଶ୍ୱାସ, କ୍ଷେତରୁ କିଛି ବାଲୁଙ୍ଗା ସଫା କରିବାରେ ଏହା ସାହାଯ୍ୟ କରିବ । ଯେଉଁ ପିଲାମାନେ ଶବ୍ଦଧନ୍ଦା ଉତ୍ତରରେ ନିଜର ଭୁଲ ଦେଖିବେ, ଅନ୍ତତଃ ସେମାନେ ଆଉ କେବେ 'କ୍ରୁର' ବା 'କୃର' ଲେଖିବେ ନାହିଁ । ସେମାନଙ୍କ ଜରିଆରେ ଅନ୍ୟ କେତେକଙ୍କର ଭୁଲ୍ ମଧ୍ୟ ସଂଶୋଧିତ ହୋଇଯିବ, ଏ ଆଶା ଆମର ରହିଛି ।



## ଠିକ୍ ଶବ୍ଦଟି କହିପାରିବ ? ?

ଶେଷରେ 'ନିକ' ଥିବା କେତୋଟି ଶବ୍ଦର ଅର୍ଥ ସୂଚନା ଛଳରେ ତଳେ ଦିଆଯାଇଛି । ସେଗୁଡ଼ିକ କ'ଣ କହିଲ ଦେଖି । ଉଦାହରଣ : ସିପାହୀ- ସୈନିକ ।

୧ । ବିଜ୍ଞାନରେ ଯାହାର ବ୍ୟୁତ୍ପତ୍ତି ଅଛି
୨ । ଆଇନସମ୍ମତ
୩ । ଯେ ଉଡ଼ାଜାହାଜ ଚଳାଇ ଜାଣନ୍ତି
୪ । ଯାହା ଆଗେ ନଥିଲା, କେବଳ ଏବେ ଅଛି
୫ । ଦରମା ନ ନେଇ ଯେ କାମ କରନ୍ତି
୬ । ଦର୍ଶନଶାସ୍ତ୍ରରେ ଯେ ଅଭିଜ୍ଞ
୭ । ପ୍ରତିଦିନ ପ୍ରକାଶ ପାଉଥିବା ସମ୍ବାଦପତ୍ର
୮ । ବାରମ୍ବାର ଆସୁଥିବା (recurring)
୯ । ଶାସନ କାର୍ଯ୍ୟ ସମ୍ବନ୍ଧୀୟ

(ଉତ୍ତର ୪୩ ପୃଷ୍ଠାରେ)



## ଅଦିନିଆ ମେଘ ଗୁପୁରୁ ସୁପୁରୁ

ମୁନ୍‌ମୁନି କେ ଦାସ

ଅଦିନିଆ ମେଘ ଗୁପୁରୁ ସୁପୁରୁ
ହେଁସକୁ ଉଡ଼ାଇ ଧରି
ମେଘ ରାଇଜରୁ ଆସିଥିଲାବେଳେ
ହସୁଥାଏ କିରିକିରି ।

ଯା' ଯା' ମେଘ ଫେରି
ଅବେଳରେ ଆସି ନିୟମ ଭାଙ୍ଗୁଛୁ
ଯା' ତୁ ଆକାଶେ ଫେରି ।

ଅଟକିଗଲା ସେ ପବନ ରାଇଜେ
ଗୁପୁରୁ ସୁପୁରୁ ହେଲା
ସୂରୁଯ ଓହାଡ଼େ କହିଲା ଫେରି ଯା'
ନହେଲେ ରାଗିବି ଭଲା ।

ଅଦିନିଆ ମେଘ ଜାଣି
ଆକାଶ ରାଇଜେ ଫେରିଗଲା ସିଏ
ପେଟେ ଧରି ପେଟେ ପାଣି ।

*ରଚିଲୋ, ରେଞ୍ଜ, ପୁରୀ-୭୫୨୧୧୪*

# କାଳେ କାଳେ ଧର୍ମର ଜୟ

ପଣ୍ଡିତ ନାରାୟଣ ଶତପଥୀ



ଦ୍ୱାପର ଯୁଗର କଥା । କୌରବ ପାଣ୍ଡବଙ୍କ ମଧ୍ୟରେ ମହାଭାରତ ଯୁଦ୍ଧର ସମସ୍ତ ଆୟୋଜନ ସରିଯାଇଛି । ଯୁଦ୍ଧ ଭୂମିରେ ସମସ୍ତେ ଉପଗତ । ସମସ୍ତ ସୈନ୍ୟ ତଥା ଅଶ୍ୱାରୋହୀ, ପଦାତିକ ପ୍ରସ୍ତୁତ ଅଛନ୍ତି । ପାଣ୍ଡବମାନେ ମଧ୍ୟ ବନ୍ଧୁବାନ୍ଧବ ଧରି ଯୁଦ୍ଧ ପାଇଁ ପ୍ରସ୍ତୁତ । ହଠାତ୍ ଜ୍ୟେଷ୍ଠ ପାଣ୍ଡବ ଧର୍ମରାଜ ଯୁଧିଷ୍ଠିର ରଥରୁ ଓହ୍ଲାଇ ପାଦରୁ ଜୋତା ଖୋଲି ସିଧା ଚାଲିଲେ ପିତାମହ ଭୀଷ୍ମଙ୍କ ନିକଟକୁ । କୌରବ ପକ୍ଷର ସୈନ୍ୟମାନେ ଭାବିଲେ, ଯୁଧିଷ୍ଠିର ଆସିଲେଣି ନିଶ୍ଚୟ ଶରଣ ପଶିବେ ଓ ଯୁଦ୍ଧ କରିବେ ନାହିଁ । ଯେହେତୁ ସେ ରକ୍ତପାତକୁ ଭଲପାଆନ୍ତି ନାହିଁ ।

ଏପଟେ ପାଣ୍ଡବ ପକ୍ଷର ଦ୍ୱିତୀୟ ପାଣ୍ଡବ ଭୀମ କ୍ରୋଧରେ ଜର୍ଜରିତ ହେଉଥାନ୍ତି– ଏବେ ଭାଇ ଗଲେ ଭୀଷ୍ମଙ୍କ ସମ୍ମୁଖରେ ଯୁଦ୍ଧ ବିରତି ପାଇଁ ଭିକ୍ଷା ମାଗିବେ । ମଧ୍ୟମ ପାଣ୍ଡବ ଅର୍ଜୁନ ମଧ୍ୟ ବ୍ୟସ୍ତବିବ୍ରତ ହୋଇ ଚିନ୍ତାକଲେ– ବଡ଼ଭାଇ ଗଲେ ନିଶ୍ଚିତ ଭାବେ ଯୁଦ୍ଧ ବନ୍ଦ କରିବେ । କିନ୍ତୁ ଅର୍ଜୁନ ରଥର ସାରଥି ପ୍ରଭୁ ଶ୍ରୀକୃଷ୍ଣ ସ୍ଥିରନିଶ୍ଚଳ । ସମସ୍ତେ ବିବ୍ରତ, ଏତେ ବଡ଼ ଯୁଦ୍ଧ ବନ୍ଦ ହୋଇଯିବ ।

ଏହି ସମୟରେ ଯୁଧିଷ୍ଠିର ଭୀଷ୍ମଦେବଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି କହିଲେ, "ଆମେମାନେ ବାଲ୍ୟକାଳରୁ ପିତୃହୀନ ହୋଇଥିଲୁ । ଆପଣ କିନ୍ତୁ ଆମମାନଙ୍କୁ ପୁତ୍ରବତ୍ସଳ ନୀତିରେ ଲାଳନପାଳନ କରିଛନ୍ତି । ଏବେ କିନ୍ତୁ ବଡ଼ଭାଇଙ୍କ ଯୁଦ୍ଧ ଡାକରାରେ ଯୁଦ୍ଧଭୂମିରେ ଉପଗତ ହେଉଛୁ– ଏହା କିନ୍ତୁ ଆମର ଅନିଚ୍ଛା ସତ୍ତ୍ୱେ । ଆପଣ ଆମମାନଙ୍କୁ ଯୁଦ୍ଧ ପାଇଁ ଅନୁମତି ଦିଅନ୍ତୁ ।"

ତହୁଁ ଭୀଷ୍ମଦେବ କହିଲେ, "ତୁମେ ନିଶ୍ଚିତ ଜଣେ ଧାର୍ମିକ ପୁରୁଷ । ଧର୍ମରକ୍ଷା କରି ଯୁଦ୍ଧ କର । ଧର୍ମରକ୍ଷା ପୂର୍ବକ ଗୁରୁଜନଙ୍କ ଅନୁମତି ଭିକ୍ଷା କରୁଛ । ଏଣୁ ତୁମେ ନିଶ୍ଚୟ ଏ ଯୁଦ୍ଧରେ ବିଜୟଲାଭ କରିବ, ଏହା ମୋର ଆଶୀର୍ବାଦ ।"

ଏହା ପରେ ଯୁଧିଷ୍ଠିର ଗଲେ ଗୁରୁ ଦ୍ରୋଣଙ୍କ ନିକଟକୁ । ଗୁରୁଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି କହିଲେ, "ଆପଣ ଆମମାନଙ୍କ ଗୁରୁଦେବ, ପିତୃ ପଦବାଚ୍ୟ । ଆମ୍ଭମାନଙ୍କୁ ଅନେକ ଧର୍ମଶାସ୍ତ୍ର, ନୀତିଶାସ୍ତ୍ର, ଯୁଦ୍ଧବିଦ୍ୟା ଇତ୍ୟାଦି ଶିକ୍ଷା

ଦେଇଛନ୍ତି । ଏବେ ଆମର ଅନିଚ୍ଛା ସତ୍ତ୍ୱେ ବଡ଼ଭାଇଙ୍କ ଆହ୍ୱାନ କ୍ରମେ ଯୁଦ୍ଧଭୂମିରେ ଉପସ୍ଥିତ ହୋଇଛୁ । ଆପଣ ମୋତେ ଓ ମୋ ଭାଇମାନଙ୍କୁ ଯୁଦ୍ଧ କରିବା ପାଇଁ ଅନୁମତି ପ୍ରଦାନ କରନ୍ତୁ ।" ଏହା ଶୁଣି ଗୁରୁ ଦ୍ରୋଣାଚାର୍ଯ୍ୟ ଠିଆ ହୋଇ ଯୁଧିଷ୍ଠିରଙ୍କୁ ଅତି ଆନନ୍ଦ ସହକାରେ କୁଣ୍ଢାଇ ପକାଇ ଆଲିଙ୍ଗନ କରି କହିଲେ, "ତୁମ୍ଭେମାନେ ସବୁ ପୁତ୍ର ସଦୃଶ । ଅଶ୍ୱତ୍ଥମା ମୋର ଜନ୍ମିତ ପୁତ୍ର ହେଲେ ମଧ୍ୟ କେବଳ କର୍ତ୍ତବ୍ୟ ଦୃଷ୍ଟିରୁ ମୁଁ ତାକୁ ଆପଣାର କରିଥାଏ । ମାତ୍ର ତୁମେମାନେ ମୋର ପୁତ୍ରଠାରୁ ଅଧିକ ସ୍ନେହର ବା ଆପଣାର । କାରଣ ତୁମେମାନେ ସବୁବେଳେ ଧର୍ମକୁ ରକ୍ଷା କରି ଆଗେଇ ଚାଲିଛ ଓ ସମସ୍ତ ଯାତନା ଅନାୟାସରେ ସହିଛ । ଏ ଯୁଦ୍ଧରେ ତୁମର ବିଜୟ ସୁନିଶ୍ଚିତ । ଭୟ କରନାହିଁ, ଯୁଦ୍ଧ କର । ତୁମକୁ ଧର୍ମ ରକ୍ଷା କରିବ ।''

ଏହିପରି ଶଲ୍ୟ, କୃପାଚାର୍ଯ୍ୟ ପ୍ରଭୃତି ଗୁରୁଜନ ଅନୁରୂପ ବାର୍ତ୍ତା ଶୁଣାଇଲେ । ଉକ୍ତ ଦୃଶ୍ୟକୁ ଉଭୟ ପକ୍ଷର ସୈନ୍ୟ ଆଶ୍ଚର୍ଯ୍ୟଚକିତ ଭାବେ ଦେଖୁଥା'ନ୍ତି । ଶେଷରେ ପାଣ୍ଡବମାନଙ୍କର ଜୟ ହୋଇଥିଲା ।

*ସୁକିନ୍ଦା, ଯାଜପୁର*

---



## ଚାଳଘର

ଶ୍ରୀ ଶୁଭନାରାୟଣ ଶତପଥୀ

ଚାଳଘର ମୁଁ ଚାଳଘର
ବାଉଁଶ, ଛଣରେ ଦେହ ମୋର ।

ସିମେଣ୍ଟ ହେଉ କି ଝାଟିମାଟି
ସବୁକାନ୍ଥ ପାଇଁ ମୁଁ ଫିଟ୍ ।

କୋରଟରେ ବନ୍ଧା ବାଉଁଶ, ବତା
ଓରାଦ୍ୱାରା ଟେକା ଚାଳର ଛତା ।

ଖରାରୁ ସୁରକ୍ଷା ଶୀତଳତା
ଶୀତଦିନେ ଦିଏ ଉଷୁମତା ।

ବରଷା ପାଣି ଯେ ପଡ଼େ ଗଡ଼ି
ଆଶ୍ରିତ ଥକା ଯାଏ ଛାଡ଼ି ।

ଚାଳଘରର ଉପାଦାନ
ବିଲ ଓ ବାଡ଼ିରେ ବିଦ୍ୟମାନ ।

ଛପର କରଇ ସୁଆଁସିଆ
ପାଶେ ନିତି ବର୍ଷ ହୋଇ ଠିଆ ।

ବଇରୀ ମୋର ନିଆଁ ଝଡ଼ି
ସତର୍କ ହେଲେ ଯିବେ ଛାଡ଼ି ।

ପରିବେଶର ସଂରକ୍ଷଣ
ଦୂର ବିପତ୍ତି ହୁଏ ଜାଣ ।

ମୋର ବାରତା ମନେରଖ
ମୋ ସାଥେ ଚଳି ପାଅ ସୁଖ ।

ବିଜିପୁର, ବ୍ରହ୍ମଗିରି, ପୁରୀ



# ଅନନ୍ତ ପଦ୍ମନାଭନ୍ ସ୍ୱାମୀ ମନ୍ଦିର

ଏହି ମନ୍ଦିରଟି କେରଳର ଥିରୁଅନନ୍ତପୁରମ୍‌ଠାରେ ଅବସ୍ଥିତ । ଏହା ବିଷୟରେ ଜନସାଧାରଣ ଅବଗତ ହେଲେ ଯେତେବେଳେ ସୁପ୍ରିମକୋର୍ଟ ଏହାର ରତ୍ନଭଣ୍ଡାର ଖୋଲିବାର ନିର୍ଦ୍ଦେଶନାମା ଜାରି କଲେ । ପରେ ଏହା ବିଷୟରେ ଓ ଏହାର ଭଣ୍ଡାର ବିଷୟରେ ଅନେକ ଅଜଣା ଓ ବିଚିତ୍ର ଆଶ୍ଚର୍ଯ୍ୟଜନକ ତଥ୍ୟ ସାମନାକୁ ଆସିଲା ।

ଏହି ମନ୍ଦିରଟି ଭଗବାନ୍ ବିଷ୍ଣୁଙ୍କର ୧୦୮ ଦିବ୍ୟ ଦର୍ଶନ ମନ୍ଦିର ମଧ୍ୟରୁ ଗୋଟିଏ । ଆଇ.ପି.ଏସ୍. ଅଫିସର ଟି.ପି. ସୁନ୍ଦରରାଜନ ୨୦୧୧ରେ ସୁପ୍ରିମକୋର୍ଟର ଆଦେଶକ୍ରମେ ଏହି ଭଣ୍ଡାର ଖୋଲିବାକୁ ଯାଇଥିଲେ ।



ଏହି ମନ୍ଦିର ଏ.ବି.ସି.ଡି.ଇ.ଏଫ୍. ନାମରେ ୬ଟି ବିରାଟ କୋଠରି ରହିଛି । ସି.ଡି.ଇ ଓ ଏଫ୍‌କୁ ବହୁବାର ଖୋଲାଯାଇଛି; ମାତ୍ର ଏ.ବି. କୋଠରିକୁ ଖୋଲାଯାଇନଥିଲା । ଏହି ଦୁଇ କୋଠରିର ଚାବି ଭିନ୍ନ ଥିଲା ।




୨୦୧୪ରେ ମନ୍ଦିରର ଟ୍ରଷ୍ଟି ହରିକୁମାରଙ୍କ ସହିତ ଏକ ସାକ୍ଷାତକାରରେ ସେ ଯାହା ବର୍ଣ୍ଣନା କଲେ, ତାହା ହେଲା– 'ଏ' ଓ 'ବି' କୋଠରି ମଧ୍ୟରୁ 'ଏ' କୋଠରି ଖୋଲି ହେଲାନାହିଁ । କାରଣ ଏହାର ଚାବି ନଥିଲା କି ପ୍ରବେଶ ପଥ କେଉଁଠି ଦେଖାଗଲା ନାହିଁ । ତେଣୁ 'ବି' କୋଠରିକୁ ଖୋଲିବାକୁ ଯାଇ ପ୍ରଥମେ ଏକ ସୁଡ଼ଙ୍ଗ ଦେଖିଲେ । ସୁଡ଼ଙ୍ଗର ତଳ ଆଡ଼କୁ ଅନେକଗୁଡ଼ିଏ ପାହାଚ ଥିଲା । ତା'ପରେ ଏକ ଗ୍ରାନାଇଟ୍ ପଥରର ଚଟାଣ ଥିଲା । ଆହୁରି ଭିତରକୁ ଯିବାବେଳକୁ ଯାହା ଦେଖିଲେ ସମସ୍ତଙ୍କର ଆଖି ଖୋସି ହୋଇଗଲା । ଏକ ଆଲୋକର କ୍ଷୀଣ ରେଖା ସେମାନେ ଦେଖିଲେ, ଯେପରି ଆକାଶରେ କୋଟି କୋଟି ତାରା ବିଦ୍ୟମାନ !

ସେହି କୋଠରିରେ ଥିଲା ୩ ୧/୨ ଫୁଟ ଉଚ୍ଚର ଏକ ସ୍ୱର୍ଣ୍ଣନିର୍ମିତ ବିଷ୍ଣୁମୂର୍ତ୍ତି । ଏହା ଅଜସ୍ର ସ୍ୱର୍ଣ୍ଣମୁଦ୍ରା, ହୀରା, ନୀଳା ଆଦି ମୂଲ୍ୟବାନ୍ ଧାତୁର ଗହଣା । କୋହିନୂର ହୀରାଠାରୁ ଅଧିକ ଓଜନ ୧୧୦ କିଲୋର ଏକ ମୁକୁଟ ଥିଲା ।



(କୋହିନୂର ହୀରାର ଓଜନ ୧୦୫ କିଲୋ ।) ତା' ବ୍ୟତୀତ ୨୦୦ ବର୍ଷର ପୁରୁଣା ଏକ ସ୍ୱର୍ଣ୍ଣ ସିଂହାସନ, ଯାହାର ଦେହସାରା ଅନେକ ମୂଲ୍ୟବାନ୍ ଧାତୁ ଖଞ୍ଜାଯାଇଥିଲା । ଏହି କଳ୍ପନାତୀତ ଧନରାଶିକୁ ସୁଡ଼ଙ୍ଗ ମଧ୍ୟରୁ ଉପରକୁ ଆଣିବା ପାଇଁ ୧୫ ଜଣ ଲୋକଙ୍କ ଦ୍ୱାରା

ଦିନଟିଏ ଲାଗିଥିଲା । ଏସବୁ ମୂଲ୍ୟବାନ୍ ସମ୍ପତ୍ତିର ମୂଲ୍ୟ ହିସାବରୁ ଜଣାଗଲା ୨୦୦ ବିଲିୟନ୍ ଡଲାର ବା ୧.୩ ଲକ୍ଷ କୋଟି ଟଙ୍କା ।



ପୁନଶ୍ଚ 'ଏ' କୋଠରି ଅଜ୍ଞାତ ତଥ୍ୟ ବିଷୟରେ ଲୋକମୁଖରୁ ଜଣାଯାଏ ଯେ ତାହାକୁ ଅନେକ ବିଷଧର ସର୍ପ ଜଗିରହିଛନ୍ତି । ଏହାକୁ କେବଳ ଗରୁଡ଼ ମନ୍ତ୍ର ଦ୍ୱାରା ଖୋଲିହେବ ଏବଂ ଏହାମଧ୍ୟରେ ଯାହା ଧନସମ୍ପତ୍ତି ରହିଛି, ତାହା ସମୁଦ୍ର ମନ୍ଥନରୁ ମିଳିଥିବା ରତ୍ନଭଣ୍ଡାର ।

ଯାହା ବି ହେଉ, ବାକି ଆଉ ୨ଟି ବିରାଟ କୋଠରି ରହିଛି, ଯାହାକି ଉପରୋକ୍ତ ସମସ୍ତ କୋଠରିଠାରୁ ବିରାଟ । ଏହା ହେଲା ସ୍ୱାମୀନାଥନ୍ ମନ୍ଦିରର ଇତିହାସ ।

(ସଂଗୃହୀତ)

# ଯଥାର୍ଥ ମୂଲ୍ୟ

ଶ୍ରୀମତୀ ଶରତ କୁମାରୀ ସ୍ୱାଇଁ

ରଙ୍ଗବେରଙ୍ଗର ଫୁଲ, ପତ୍ରରେ ସୁନ୍ଦର ଭାବରେ ସଜା ହୋଇଛି ବିଦ୍ୟାଳୟର ସଭାଗୃହ । ଗୋଲାଚନ୍ଦନ, କର୍ପୂର ଧୂପ, ଦୀପର ମହମହ ବାସ୍ନାରେ ମହକିଯାଉଥାଏ ଚାରିଆଡ଼ । ସୁଶୋଭିତ ଚଉକି ଉପରେ ମହାନ୍ ଶିକ୍ଷକ ଡକ୍ଟର ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ଙ୍କର ଫଟୋ । କାନ୍ଥ କଳାପଟାରେ ବଡ଼ ବଡ଼ ଅକ୍ଷରରେ ଲେଖାଯାଇଛି ।

"ଗୁରୁର୍ବ୍ରହ୍ମା ଗୁରୁର୍ବିଷ୍ଣୁ ଗୁରୁଦେବ ମହେଶ୍ୱରଃ
ଗୁରୁ ସାକ୍ଷାତ ପରଂବ୍ରହ୍ମ ତସ୍ମୈଶ୍ରୀ ଗୁରବେ ନମଃ ।"

ବିଦ୍ୟାଳୟ ସମ୍ମୁଖରେ ଆନନ୍ଦଅଧୀର ଛାତ୍ରଛାତ୍ରୀ । ସତରେ କେମିତି ନିଆରା ନିଆରା ଲାଗୁଥାଏ ପରିବେଶ । ସଭିଙ୍କ ମନରେ ଉତ୍‌କଣ୍ଠା । ମୁଖ୍ୟ ଅତିଥି ଆସିବା ପରେ ଗୁରୁପୂଜା ଆରମ୍ଭ ହେବ । ନିପଟ ପଲ୍ଲୀ ଅଞ୍ଚଳରେ କାହିଁ କେଉଁ କାଳରୁ ଗଢ଼ି ଉଠିଥିବା ଏହି ବିଦ୍ୟାଳୟରୁ ପାଠ ପଢ଼ି ହଜାର ହଜାର ଛାତ୍ରଛାତ୍ରୀ ଦେଶବିଦେଶରେ ଅନେକ ନାମ କମେଇଲେଣି । କିଏ ଧନ, ମାନ, ଯଶ ଲାଭ କରି ଉତ୍‌ଫୁଲ୍ଲ ତ ଆଉ କେହି ଜୀବନରେ ବଡ଼ କାମ ନ ପାଇ ଉଚ୍ଚସ୍ଥାନ ନ ପାଇବା ମନସ୍ତାପରେ ବିଷଣ୍ଣ । ହେଲେ ଆଜି ଯିଏ ମୁଖ୍ୟଅତିଥି ଭାବେ ବିଦ୍ୟାଳୟକୁ ଆସୁଛନ୍ତି, ସେ ହେଉଛନ୍ତି ଜିଲ୍ଲାପାଳ, ଏହି ବିଦ୍ୟାଳୟର ପୁରାତନ ଛାତ୍ର । ବୁଦ୍ଧି, ଜ୍ଞାନରେ ପରିପୂର୍ଣ୍ଣ । ଜଣେ ଦକ୍ଷ ପ୍ରଶାସନିକ ଅଧିକାରୀ ଭାବେ ସୁପରିଚିତ । ଅନେକ ପୁରାତନ ଛାତ୍ରଙ୍କ ସହ ଅବସରପ୍ରାପ୍ତ ଶିକ୍ଷକଙ୍କୁ ମଧ୍ୟ ନିମନ୍ତ୍ରଣ କରାଯାଇଛି ।

ସଭାକକ୍ଷ, ଶ୍ରେଣୀଗୃହ, ବାରଣ୍ଡା– ସବୁଠି ଛାତ୍ରଛାତ୍ରୀ

ଓ ଶିକ୍ଷକ । ଗହଗହ ଶୁଭୁଛି ଛାତ୍ରଛାତ୍ରୀଙ୍କ କଳନାଦ । ମାଇକ୍‌ରେ ଘୋଷଣା କରାଯାଇଛି କାର୍ଯ୍ୟକ୍ରମର ସୂଚୀ । ମଝିରେ ମଝିରେ ଭଜନ ଓ ଦେଶାତ୍ମବୋଧକ ସଂଗୀତ ବେଶ୍ ଆମୋଦିତ କରୁଥାଏ ଉପସ୍ଥିତ ଜନତାଙ୍କୁ ।

ସବୁଠାରୁ ବୟସ୍କ ଅବସରପ୍ରାପ୍ତ ଯଦୁଗୁରୁଜୀ ତରତର ହୋଇ ଅଟୋରିକ୍ସାରୁ ଓହ୍ଲାଇପଡ଼ି ଏକପ୍ରକାର ଦୌଡ଼ିଗଲେ ପ୍ରଧାନ ଶିକ୍ଷକଙ୍କ ଅଫିସ୍ ଆଡ଼କୁ । ସେତେବେଳେ ପ୍ରଧାନ ଶିକ୍ଷକ ଜିଲ୍ଲାପାଳ ଗୁରୁଚରଣଙ୍କୁ ଅନ୍ୟ ନିମନ୍ତ୍ରିତ ଅତିଥିମାନଙ୍କ ସହ ପାଛୋଟି ନେଉଥିଲେ ସଭାମଣ୍ଡପକୁ । ଯଦୁଗୁରୁଜୀ ଜିଲ୍ଲାପାଳଙ୍କ ସାମନାସାମନି ହୋଇଯିବାରୁ ହଠାତ୍ ତାଙ୍କ ପାଟିରୁ ବାହାରିପଡ଼ିଲା, "ନମସ୍କାର ।" ଚାହିଁଲେ ଗୁରୁଚରଣ । ଚିହ୍ନିଲେ ନିଶ୍ଚୟ; କିନ୍ତୁ ପାଟି ଖୋଲି କିଛି କହିଲେ ନାହିଁ କାହିଁକି ? ବିଳମ୍ବ ନ କରି ଯଦୁଗୁରୁଜୀ ପଚାରିଲେ, "ଚିହ୍ନିପାରିଲନି କି ବାବା ?" ଗୁରୁଚରଣଙ୍କର ଉତ୍ତର ଥିଲା, "ହଁ......ହଁ ।"



ଜିଲ୍ଲାପାଳଙ୍କୁ ପୁଷ୍ପଗୁଚ୍ଛ ଦେଇ ପିଲାଟିଏ ମଞ୍ଚ ଉପରକୁ ପାଛୋଟିନେଲା । କରତାଳି ଦେଉଥିଲେ ଦେଖଣାହାରୀ । ମଞ୍ଚକୁ ଚାହିଁ ଯଦୁଗୁରୁଜୀ ମନେପକାଉଥିଲେ ଅତୀତକୁ । ଏଇ ଗୁରୁଚରଣଙ୍କୁ ତାର ଜେଜେମା' ଦିନେ ବିଦ୍ୟାଳୟକୁ ଆଣିଥିଲେ ପାଠ ପଢ଼ାଇବାକୁ । କଅଁଳିଆ ଛୁଆଟାର ଲାଜୁଆ ଆଖି ଏବେ ବି ମନେପଡ଼ିଯାଉଛି ତାଙ୍କର । ନାମଲେଖା ଦାୟିତ୍ୱରେ ସେତେବେଳେ ସେ ଥିଲେ । ଛୁଆର ନାଁ କଣ ଆଉ ବୟସ କେତେ ପଚାରିବାରୁ ଜେଜେମା' ବୟସ କଥା ତ କହିଲେ, ନାଁଟି 'ଟିକ' କହିବାରୁ ଯଦୁଗୁରୁଜୀ ମୁଣ୍ଡ ହଲାଇଲେ । କହିଲେ, "ଏଇଟା ତମର ଡାକ ନାଁ । ଭଲ ନାଁ କ'ଣ କୁହ ?" ଜେଜେମା' କହିଲେ, "ଆମେ ତ ଟିକ ଟିକ ଡାକୁଛୁ, ତମେ ଗୋଟିଏ ଭଲ ନାଁ ଲେଖେଇଦିଅ । ଯଦୁଗୁରୁଜୀ ଭାବି ଭାବି ନାଁ ଦେଇଥିଲେ 'ଗୁରୁଚରଣ' । ଏକବାରେ ପବିତ୍ର । ସେହି ଗୁରୁଚରଣ ଆଜି ଜିଲ୍ଲାପାଳ । ଭଗବାନ୍ ତାର ମଙ୍ଗଳ କରନ୍ତୁ । ଉତ୍ତରୋତ୍ତର ଉନ୍ନତି ହେଉ । ମନେ ମନେ ଏତକ କହିଦେବା ପରେ କେଜାଣି କାହିଁକି ଗୋଟାଏ ଦୀର୍ଘନିଶ୍ୱାସ ବାହାରିଗଲା ତାଙ୍କର । ମନରେ ଦ୍ୱନ୍ଦ୍ୱ– "ଗୁରୁଚରଣ ତ ଚିହ୍ନିଲା ଭଲ ଭାବେ, ହେଲେ ପଦୁଟିଏ କିଛି କହିଲା ନାହିଁ କାହିଁକି ? କ'ଣ ତାଙ୍କର ଏ ଜୀର୍ଣ୍ଣଶୀର୍ଣ୍ଣ ବେଶପୋଷାକକୁ ସେ ପସନ୍ଦ କଲାନାହିଁ ? ଏ ଗରିବ ଗୁରୁଜୀଙ୍କୁ ?"

ଭାଷଣ ଆରମ୍ଭ ହୋଇଗଲାଣି । ସଭାମଞ୍ଚରୁ ଗୁରୁଗମ୍ଭୀର ସ୍ୱରରେ ଗୁରୁଭକ୍ତିର ପରାକାଷ୍ଠା ସମ୍ପର୍କରେ ଭାଷଣ ଦେଉଛନ୍ତି ଜିଲ୍ଲାପାଳ । ପରେ ପରେ ଅନ୍ୟାନ୍ୟ ନିମନ୍ତ୍ରିତ ବ୍ୟକ୍ତି ବକ୍ତୃତା ଦେଇସାରିଲେଣି । ହଠାତ୍ ମାଇକ୍‌ରେ ଯଦୁଗୁରୁଜୀ ତାଙ୍କ ନାମ ଡକା ହେବା ଶୁଣି ଚମକିପଡ଼ିଲେ । ତାଙ୍କୁ ସଭାମଞ୍ଚକୁ ଆସିବାକୁ ବାରମ୍ବାର ଅନୁରୋଧ କରୁଥିଲେ ପ୍ରଧାନ ଶିକ୍ଷକ । ନିଜର ଅନିଚ୍ଛା ସତ୍ତ୍ୱେ ସେ ଉଠିଲେ ନିଜ ସ୍ଥାନରୁ । ମଞ୍ଚାସୀନ ସମସ୍ତ ସଜ୍ଜନ, ବିଶେଷ କରି ଜିଲ୍ଲାପାଳଙ୍କୁ ଅଭିନନ୍ଦନ ଜଣାଇ ପିଲାମାନଙ୍କୁ ଛୋଟ ଗପଟିଏ କହିବାକୁ ଆରମ୍ଭ କଲେ । ଗପଟି ଏପରି ଥିଲା–

"କୃଷକଟିଏ ନିଜ କ୍ଷେତରେ ହଳ କରୁଥିଲା । ହଳ କରୁ କରୁ ତାର ଲଙ୍ଗଳରୁ କାଠ ଖିଲଟିଏ ହୁଗୁଳିଗଲା । ଖିଲକୁ ପିଟି ପୁଣି ସେଥିରେ ଲଗାଇବା ପାଇଁ ଭାରୀ ଜିନିଷଟିଏ ଖୋଜିଲା । ଚାରିଆଡ଼କୁ ଚାହିଁଲା । ଦେଖିଲା, କିଛି ଦୂରରେ ପଥର ଖଣ୍ଡେ ମାଟିରେ ପୋତି ହୋଇଯାଇଛି । ତାର କିଛି



ଅଂଶ ଉପରକୁ ଦିଶୁଥାଏ । କୃଷକଟି ସାଙ୍ଗେସାଙ୍ଗେ ଯାଇ ପଥରଟି ନେଇଆସିଲା ଓ କାଠ ଖିଲଟିକୁ ପିଟି ପିଟି ଠିକ୍ କରିବାରେ ଲାଗିଲା । ସେଇ ବାଟ ଦେଇ ଚାଲିଯାଉଥିବା ବଣିଆଟି କୃଷକ ହାତରେ ଚକ୍ ଚକ୍ କରୁଥିବା ପଥରଟି ଦେଖିଦେଇ ଚମକିଗଲା । ଚିହ୍ନିଦେଲା ପଥରଟିକୁ । ମନେ ମନେ ଭାବିଲା– ଆରେ ଏ ହୀରା ପଥରଟି ଇଏ ପାଇଲା କେଉଁଠୁ ? କୃଷକଟି ପାଖକୁ ଝପଟିଗଲା ସେ । ପଥରଟିକୁ ଏପଟସେପଟ କରି ଦେଖିଲା । ନେବା ପାଇଁ ମାଗିଲା । ବଣିଆଟିର ଆଗ୍ରହ ଦେଖି କୃଷକଟିର ସନ୍ଦେହ ହେଲା । ପଥରଟି ଦେବ ନାହିଁ ବୋଲି ମନା କରିଦେଲା । ବଣିଆର ଲୋଭ । କ'ଣ କରିବ ? ଦଶଟଙ୍କାଟିଏ କାଢ଼ି କୃଷକକୁ ଯାଚିଲା ଆଉ ପଥରଟି ନେବାକୁ କହିଲା । ସେ ପଥର ବିଷୟରେ ତ କୃଷକଟି କିଛି ଜାଣି ନ ଥିଲା । ଭାବିଲା, "ଛାର ପଥରଖଣ୍ଡକ ପାଇଁ ଯଦି ଦଶଟଙ୍କା ମିଳିଯାଉଛି, ବହୁତ ଭଲ । ପଥରଟି ଦେଇଦେଲା ।



ନ

ଯାଇ ମହାଆନନ୍ଦରେ ଘରକୁ ଫେରିଗଲା । ଘର ଭିତରେ କବାଟ ବନ୍ଦ କରି ପଥରଟିକୁ ପରୀକ୍ଷା ନିରୀକ୍ଷା କରୁଥିବାବେଳେ ତାହା ହାତରୁ ଖସି ପଡ଼ି ଚୂନା ହୋଇଗଲା । ବଣିଆ ହଡ଼ବଡ଼େଇ ଯାଇ ପାଟି କରି ଉଠିଲା, "ଗଲା, ସବୁ ନଷ୍ଟ ହୋଇଗଲା !" ମୁଣ୍ଡରେ ହାତ ଦେଇ ବସି ପଡ଼ିଲା ସେଇଠି । କାବା ଲାଗିଲା ତାକୁ । ଭାବିଲା, ଯେଉଁ ପଥରଟିରେ ପିଟି ପିଟି କୃଷକ ଲଙ୍ଗଳ ସଜାଡ଼ିଥିଲା, ସେଇଟି ହାତରୁ ଖସିପଡ଼ି ଏପରି ଚୂନା ହୋଇଗଲା କିପରି ?

ଘର କୋଣରୁ ତାକୁ କାହାର କଣ୍ଠସ୍ୱର ଶୁଭିଲା, "ଏତିକି ବୁଝିପାରୁନୁ ? କୃଷକକୁ ଦଶ ଟଙ୍କା ଦେଇ ଲକ୍ଷ ଲକ୍ଷ ଟଙ୍କାର ହୀରା ପଥରଟି ତୁ ନେଇଆସିଲୁ ସିନା, ହେଲେ ମୋ ପ୍ରତି ଯେଉଁ ଅବିଚାର କଲୁ, ମୋର ମୂଲ୍ୟକୁ କମେଇଦେଇ ମୋତେ ଅପମାନ କଲୁ ।" ଆଶ୍ଚର୍ଯ୍ୟ ହୋଇ ବଣିଆ କହିଲା, "ଅପମାନ କଲି....ମୁଁ ?" ସ୍ୱର ଶୁଭିଲା, "ହଁ, ମନେରଖ, ଯାହାର ଯାହା ମୂଲ୍ୟ ତାହାକୁ ଠିକ୍ ମୂଲ୍ୟ ଦେବା ଉଚିତ । ଯିଏ ପ୍ରକୃତ ମଣିଷ, ଯିଏ ବିବେକବାନ, ସିଏ ଯଥାର୍ଥ ମୂଲ୍ୟ, ଯଥାର୍ଥ ସମ୍ମାନ ଦେଇଥାଏ । ଯାହାଦ୍ୱାରା ତାର ମାନବିକତା ବଢ଼ିବା ସହିତ ସେ ନିର୍ଦ୍ଦିଷ୍ଟ ବ୍ୟକ୍ତିତ୍ୱର ଅଧିକାରୀ ହୋଇପାରିଥାଏ । ଏକଥା ଶୁଣି ବଣିଆ ଲଥ୍ କରି ମୁଣ୍ଡରେ ହାତ ଦେଇ ବସିପଡ଼ିଲା । ସରିଗଲା ଯଦୁଗୁରୁଜୀଙ୍କ ଗପ । କହିଲେ, "ପିଲାମାନେ ! ସମାଜରେ ତୁମେ ଯାହା ବି କର, ଯାହା ବି ହୁଅ, ସମସ୍ତ ବ୍ୟକ୍ତିଙ୍କୁ, ଜୀବଜନ୍ତୁଙ୍କୁ, ସବୁ ପଦାର୍ଥକୁ ଯଥାର୍ଥ ମୂଲ୍ୟ ଦେବାକୁ ପ୍ରାଣପ୍ରଣେ ଚେଷ୍ଟା କରିବ ।"

ଗପ ଅଧାରୁ ଗୁରୁଚରଣ ବୁଝିଯାଇଥିଲେ ସବୁ କିଛି । ଯଦୁଗୁରୁଜୀ ସଭାମଞ୍ଚରୁ ଓହ୍ଲାଇ ଯିବାବେଳେ ଗୁରୁଚରଣ ଧାଇଁ ଧାଇଁ ଧରି ପକାଇଲେ ଯଦୁଗୁରୁଜୀଙ୍କ ଥରଥର ଶିରାଳ ହାତ ଦୁଇଟାକୁ । ଧାର ଧାର ଅନୁତାପର ଲୁହ ଝରି ପଡୁଥାଏ

ନୟନରୁ । ଯଦୁଗୁରୁଜୀ କୋଳେଇ ନେଉଥାନ୍ତି ବାତ୍ସଲ୍ୟ ସ୍ନେହରେ ଗୁରୁଚରଣଙ୍କୁ । ଦେଖଣାହାରୀ ବୁଝି ପାରୁ ନ ଥାନ୍ତି– ଏହା କ'ଣ ?

ପ୍ରଧାନ ଶିକ୍ଷକ କହିଲେ– ଜିଲ୍ଲାପାଳ ଆଜି ଭଳି ପବିତ୍ର ଦିନରେ ତାଙ୍କର ପୁରାତନ ଗୁରୁ ଯଦୁଗୁରୁଜୀଙ୍କୁ ଗୁରୁଭକ୍ତି ଜଣାଇ ପବିତ୍ର ଗୁରୁଦିବସର ମହତ୍ତ୍ୱକୁ ଶତଗୁଣ କରିଦେଇଛନ୍ତି । କରତାଳିରେ କମ୍ପି ଉଠୁଥିଲା ସଭାସ୍ଥଳ । ଯଦୁଗୁରୁଜୀ ଧୀରେ ଧୀରେ ଓହ୍ଲାଇଆସୁଥିଲେ ପାହାଚ ତଳକୁ । ଲୋତକଭରା ନୟନରେ ଚାହିଁ ରହିଥିଲେ ଗୁରୁଚରଣ ।

*୫୫୪/୧୯୬୫, ଶ୍ରୀବିହାର, ପଟିଆ, ଭୁବନେଶ୍ୱର-୩୧*



ଯେଉଁ ମାନେ ଆବଶ୍ୟକ ଠାରୁ
ଅଧିକ ମିଠା କଥା କହନ୍ତି,
ସେମାନେ ହେଲେ ମହାକାଳ
ଫଳ। ସେମାନେ ସମସ୍ତଙ୍କୁ
ଶିଘ୍ର ନିଜର କରିନିଅନ୍ତି ସତ
କିନ୍ତୁ ଶେଷରେ ଏକ ଶକ୍ତ ଧକ୍କା
ଦିଅନ୍ତି।
ଉପରକୁ ଏମାନେ ବହୁତ ଭଲ
କିନ୍ତୁ ଭିତରୁ ସଇତାନ୍ ଠାରୁ ବି
ହୀନ, ଆଉ କାମ ସରିଯିବା
ପରେ ତୁ କିଏ ନା ମୁଁ
କିଏ?????????



# କାମ ତାଙ୍କ ଭାରି ବଢ଼ିଆ

ଶ୍ରୀ ନଗେନ୍ଦ୍ରନାଥ ପଟ୍ଟନାୟକ

ବାପା ପରା ଆମ ସରଗଠୁ ବଡ଼
ଆଶା, ସୁଖ ଆଉ ଶରଧା,
ପରିବାରର ସେ ଦମ୍ଭ ଓ ଶକତି
ଶାନ୍ତି ବନ୍ଧୁତାର ବାରତା ।
ବାହାରେ ଟାଣ ସେ ଭିତରେ ନରମ
ହୃଦେ ସ୍ନେହ ଆଉ ମମତା,
ସିଏ ପରା ଆମ ବନ୍ଧନର ଡୋର
ଏକ ଭାବ ଆଉ ସମତା ।
ଛାତିଟା ତାଙ୍କର ପଥର ପରିକା
ସହନରେ ସିଏ ପାଚେରୀ,
ବଚନ ତାଙ୍କର ଛୁଏଁ ମରମକୁ
କଥା କଥାକରେ ଚାତୁରୀ ।
ପିଲାଦିନେ ବାପା ଖେଳନାଟେ ପରା
ପେଟ ତାଙ୍କ ଏକ ବିଛଣା,
ଶୋଇପଡ଼େ ନିଦେ ତା ଉପରେ ମୁହିଁ
ଭୁଲି ଥକ୍କା ଯେତେ ଯାତନା ।
ପରିବାର ବୋଝ ଗାଡ଼ିର ସାରଥି
ସେ ଅଟନ୍ତି ଆମ ମୁଖିଆ,
ସପନକୁ ଆମ ପୂରଣ କରନ୍ତି
କାମ ତାଙ୍କ ଭାରି ବଢ଼ିଆ ।

*୯୯୯-୩, ଜଗମୋହନ ନଗର, ଜାଗମରା, ଖଣ୍ଡଗିରି, ଭୁବେନେଶ୍ୱର*



# ଚାଲିଥିବା ନିରନ୍ତର

ଶ୍ରୀମତୀ ଜ୍ୟୋତି ମିଶ୍ର

ନଈ ବହିଯାଏ, ଦେଖି ତାକୁ ଦିନେ
ପାହାଡ଼ ଭାବିଲା ବସି,
ଦେଖୁଛି ମୁଁ ତାକୁ, ନାଚି ନାଚି ସେ ତ
ଖୁସିରେ ଯାଉଛି ଭାସି ।

ଚିନ୍ତା, ଦକ ନାହିଁ ଅଳିଆ ଅସନା ସବୁ ସେ
ନଉଚି ଭସେଇ,
ଅଳସୁଆ ହୋଇ ଖାଲି ମୁଁ ଦେଖୁଛି
ପାରୁନାହିଁ ତାକୁ ବୁଝେଇ ।

ଚାରିକଡୁ ତାକୁ ଘେରିଦେଲେ ମୁଁ ଯେ
ହ୍ରଦଟିଏ ସେ ତ ହୋଇବ,
ବସି ଦୁଇଘଡ଼ି ସାଙ୍ଗସାଥୀ ହୋଇ
ଖୁସିଗପ ପରା କରିବ ।

ଅଭିମାନିନୀ ସେ ମାନୁନି ମୋ କଥା
କହୁଛି ସେ, ବେଳ ନାହିଁ ତାର,
ସୂର୍ଯ୍ୟ, ଚନ୍ଦ୍ର, ତାରା ସମସ୍ତଙ୍କୁ ଦେଖ,
କାମରୁ ତାଙ୍କର ନାହିଁ ତର ।

ଜନମ ନେଇଛୁ କରମ କରିବା
ହେଉ କିଆଁ ଭାଇ ଗରଗର,
ରାଗ, ରୁଷା ଆଉ ଅଭିମାନ ଛାଡ଼ି
ଚାଲିଥିବା ଆମେ ନିରନ୍ତର ।

*ଏମ୍-୬୭, ମଧୁସୂଦନ ନଗର, ଭୁବନେଶ୍ୱର-୧*

---

# ହସ-ସୁସ୍ଥ ରୁହ

ଡା. ଅଜିତାନନ୍ଦ ଗୋସ୍ୱାମୀ

ଚିକାଗୋର ବିଶିଷ୍ଟ ଚିକିତ୍ସା ବୈଜ୍ଞାନିକ ପ୍ରଫେସର ଡାକ୍ତର ମର୍ଣ୍ଣେଗୁ' ଗବେଷଣାରୁ ଜାଣିପାରିଥିଲେ ଯେ ମନୁଷ୍ୟ ଦିନକୁ ୨୦ ମିନିଟ୍ ପାଇଁ ହସିଲେ ସେ ଯେକୌଣସି ରୋଗରୁ ଆରୋଗ୍ୟ ହୋଇପାରିବ । ବିଭିନ୍ନ ରୋଗ ପାଇଁ ବିଭିନ୍ନ ହସିବାଦିନ ସ୍ଥିରୀକୃତ ହୋଇଥାଏ । ଏପରିକି ହସ କଥା ନଥାଇ କୃତ୍ରିମ ହସଦ୍ୱାରା ଉପକାର ମିଳିଥାଏ । 'ମସ୍କୋ ପାର୍ଟିସ୍ ଲୁମୁମ୍ବା' ୟୁନିଭରସିଟି କ୍ଲିନିକରେ ଗୋଟିଏ ବିଭାଗ ଅଛି, ଯେଉଁଥିରେ ହସାଇବା ଦ୍ୱାରା-ହୃଦରୋଗ, ଉଚ୍ଚ ରକ୍ତଚାପ ରୋଗ, ବହୁମୂତ୍ରରୋଗ, ମାନସିକ ଚାପ ରୋଗ, ଚର୍ମରୋଗ ଓ ଆଲର୍ଜି ରୋଗଗୁଡ଼ିକର ଚିକିତ୍ସା ହୁଏ । ହସକଥା ନଥାଏ କୃତ୍ରିମ ହସଦ୍ୱାରା ଉପକାର ମିଳିଥାଏ ମଧ୍ୟ ।

## ଆସ ହସିବା



✤ ଶିକ୍ଷକ– ଆଚ୍ଛା ଗୋବିନ୍ଦ, ପଞ୍ଜାବରେ ଲୋକମାନେ କାହିଁକି ରୁଟି ଖାଆନ୍ତି କହିଲ ?

ଗୋବିନ୍ଦ– ଶିଖ୍‌ମାନଙ୍କର ନିଶ ଦାଢ଼ି ଅଛି । ପଖାଳ ଖାଇଲେ ଦାଢ଼ିରେ ଲାଗିଯିବ ।

✤ ଛୋଟ ପୁଅ କୁନାକୁ ସାଙ୍ଗରେ ଧରି ବାପା ହୋଟେଲକୁ ଯାଇଥିଲେ । ଖାଇ ସାରି ହୋଟେଲ ବୟକୁ କହିଲେ– 'ବିଲ୍ ଆଣ ।' କୁନା ମୁହଁରେ ଆଗ୍ରହ ଫୁଟିଉଠିଲା । ସେ ବାପାଙ୍କ ହାତକୁ ଭିଡ଼ିଧରି କହିଲା– 'ମୁଁ ବିଲ୍ ଖାଇବି, ବାପା । କେବେ ଖାଇନି ।'

✤ ଜଣେ ଉଚ୍ଚପଦସ୍ଥ ପୋଲିସ୍ ଅଫିସର ଥାନା ଅଧିକାରୀଙ୍କୁ କହିଲେ, ''ତୁମ ଅଞ୍ଚଳରେ ବହୁତ ଚୋର ଉପଦ୍ରବ ହେଲେଣି । ସେଗୁଡ଼ିକୁ ଧରିପାରୁନାହଁ! – ସେଟ୍ ଏ ଥିପ୍ ଟୁ କ୍ୟାଚ୍ ଏ ଥିପ୍ ।''

ପୋଲିସ୍ ଅଫିସର୍– ଚୋର ଚୋରକୁ ଧରିବ– ସେଥିପାଇଁ ତ ଚୋର ଧରୁନାହିଁ । ମୁଁ ଚୋର ଧରିଲେ ମୋତେ ଚୋର କହିବେ ।


ସ୍ତ୍ରୀ ବ୍ୟସ୍ତ ହୋଇ ପଚାରିଲେ -- କୋଭିଡ୍ ୧୯ ଭାଇରସ୍ ତ ଗଲା, ଆମେ ଘର ବାହାରକୁ କେମିତି ଯିବା ?

---

ଉତ୍ତର- ୬- ଜୋକ, ୭- ମଶା, ୮- ଶଗଡ଼ ଗାଡ଼ି ଓ ବଳଦ, ୯- ଭାତ, ୧୦- ବହି, ୧୧- କ୍ଷିଅର ହବା, ୧୨- ଛତୁ ।

*ପରମାନନ୍ଦପୁର, ବାହାବଳପୁର, ତିହିଡ଼ି, ଭଦ୍ରକ*



## ଜନଶ୍ରୁତି: ଆମର ଢଗଢ଼ମାଳି

ଅନ୍ତର୍ଯ୍ୟାମୀ ଲେଙ୍କା

ପୋଥି ହସ୍ତକ ବିଦ୍ୟା
ପର ହସ୍ତକ ଧନ ।

ବର୍ତ୍ତମାନ ପରି ପୂର୍ବେ କାଗଜର ବ୍ୟବହାର ହେଉ ନ ଥିଲା । ଏ ଯୁଗରେ କାଗଜର ବ୍ୟବହାର ଅସୁମାରି । ଚିତ୍ର ବହିଠାରୁ ଦଉଡ଼ି, ଡବା, ସିମେଣ୍ଟ୍ ବସ୍ତା ପର୍ଯ୍ୟନ୍ତ ସବୁଠାରେ କାଗଜ ଲୋଡ଼ା ହେଉଛି । ପ୍ରାଚୀନ କାଳରେ ପାପିରସ୍ ଗଛର ଝୋଟ, ଭୁର୍ଜପତ୍ର ଓ ତାଳପତ୍ରକୁ ଲେଖାଲେଖି ପାଇଁ କାଗଜ ରୂପେ ବ୍ୟବହାର କରାଯାଉଥିଲା ।






ପ୍ରାୟ ୧୦୫ ଖ୍ରୀ.ପୂରେ ସାଇଲୁନ୍ ନାମକ ଜଣେ ଚୀନ୍‌ବାସୀ ହାତରେ କାଗଜ ତିଆରି କରୁଥିଲେ । ଚୀନ୍ ଦେଶର ଏ ବିଦ୍ୟା କ୍ରମେ ଆରବ, ସିସିଲ, ସ୍ପେନ୍ ଓ

ଇଉରୋପ ଗଲା ଏବଂ ୧୫ଶ ଶତାବ୍ଦୀର ମଧ୍ୟଭାଗରେ ଛାପାକଳର ଆବିଷ୍କାର ସଙ୍ଗେ ସଙ୍ଗେ କାଗଜର ଚାହିଦା ବଢ଼ିଲା । ୧୯ଶ ଶତାବ୍ଦୀର ଆଦ୍ୟଭାଗରେ କଳ ସାହାଯ୍ୟରେ କାଗଜ ତିଆରି ଆରମ୍ଭ ହେଲା ।


ଏସ୍ପାର୍ଟୋ ଘାସ

ଉତ୍ତର ଆଫ୍ରିକାରେ ଏସ୍ପାର୍ଟୋ ଘାସ, ଭାରତରେ ବାଉଁଶ, ସବାଇ ଘାସ, ଝୋଟ, ଛଣପଟ ଓ ଆମେରିକାରେ ଆଖୁଛେଦାରେ ତନ୍ତୁ ହେଲା କାଗଜର ପ୍ରଧାନ ଉପାଦାନ । ସବା ଶେଷରେ ଆସିଲା ଖବରକାଗଜର ଯୁଗ ଏବଂ ଏଥିପାଇଁ କାଠମଣ୍ଡ ଶସ୍ତା କାଗଜ ଯୋଗାଇଦେଲା । ବର୍ତ୍ତମାନ ପ୍ରାୟ ଶତକଡ଼ା ୭୫ ଭାଗ କାଗଜ ଏହି ଜାତୀୟ । ଫର, ପାଇନ୍ ଆଦି ହାଲୁକା କାଠ ସବୁ ଗଡ଼ ଗଡ଼ ହୋଇ କଟାଗଲା ପରେ କଳକୁ ଆସେ ଏବଂ ସେଠାରେ ତାର ଛେଲି ସଫା କରି ତାକୁ ପେଷି ମଣ୍ଡ କରାଯାଏ । ଏହି ମଣ୍ଡ ଯାନ୍ତ୍ରିକ ମଣ୍ଡ । କିନ୍ତୁ କାଠର ଟୁକୁରାକୁ କଳରେ ସିଝାଇ, ସେଥିରେ ଅନ୍ୟାନ୍ୟ ରାସାୟନିକ ଦ୍ରବ୍ୟ ମିଶାଇ ଭଲ କାଗଜ ପାଇଁ ରାସାୟନିକ ମଣ୍ଡ ମଧ୍ୟ ପ୍ରସ୍ତୁତ କରାଯାଏ । ଶିରୀଶ, ଚିନାମାଟି ଓ ରଂଗ ପ୍ରଭୃତି ମିଶାଇ ଚିକ୍କଣ ଆର୍ଟ ଓ ରଂଗିନ୍ କାଗଜ ତିଆରି ହୁଏ । ସମ୍ବାଦପତ୍ର ଛପା କାଗଜ ବେଶି ଯୋଗାନ୍ତି କାନାଡ଼ା, ନରୱେ, ସ୍ୱିଡ଼େନ୍ ଓ ରୁଷିଆ ।

ତାଳପତ୍ରରେ ଲିଖିତ ଗ୍ରନ୍ଥକୁ ପୋଥି କୁହାଯାଏ । ମୁଦ୍ରାଯନ୍ତ୍ରର ପ୍ରଚଳନ ପୂର୍ବରୁ ଆମ ଦେଶରେ ତାଳପତ୍ର ଓ ଲୁହା ଲେଖନୀରେ ପୋଥିମାନ ଲେଖାଯାଉଥିଲା । ଏବେ ମଧ୍ୟ ଗାଁର ଭାଗବତ ଗାଦି, ପୁସ୍ତକାଗାର ଓ ଯାଦୁଘରମାନଙ୍କରେ ଅନେକ ପ୍ରାଚୀନ ପୋଥି ଦେଖିବାକୁ ମିଳିବ । ସମାନ ଆକାରର ତାଳପତ୍ରଗୁଡ଼ିକ ମଧ୍ୟରେ ଛିଦ୍ର କରି ଗୋଟିଏ ଲମ୍ବା ଡୋର ଦ୍ୱାରା ସେଗୁଡ଼ିକ ବନ୍ଧାଯାଏ । ପୋଥିର ପତ୍ରଗୁଡ଼ିକୁ ରକ୍ଷା କରିବା ପାଇଁ ଦୁଇଖଣ୍ଡି କାଠପଟା ଦିଆଯାଏ ଏବଂ ଡୋରକୁ ଅଟକାଇବା ପାଇଁ ସାଧାରଣତଃ ଖଣ୍ଡେ ଝିଙ୍କକାଠି ଗୋଟିଏ ମୁଣ୍ଡରେ ଲଗାଯାଇଥାଏ । ଲେଖନାକାର ଆଣ୍ଠୁ ଉପରେ ତାଳପତ୍ରକୁ ପକାଇ ଲେଖନ୍ତି । କଅଁଳ ଆଳୁପତ୍ରକୁ ମକଚି ଘସିଦେଲେ ଅକ୍ଷରଗୁଡ଼ିକ ସ୍ପଷ୍ଟତର ହୁଏ । ଛୋଟ ପୋଥିକୁ ଖେଦା କୁହନ୍ତି । ପୂର୍ବେ ପୋଥି ଲେଖି ଅନେକ ଲୋକ ଜୀବିକା ନିର୍ବାହ କରୁଥିଲେ । ଏବେ ତାଳପତ୍ରରେ ଆଉ କେହି ପୋଥି ଲେଖୁନାହାନ୍ତି କିମ୍ବା ଯେଉଁ ସବୁ ପୋଥି ରହିଛି, ବିଶେଷ ଭାବେ କେହି ପଢ଼ାପଢ଼ି କରୁନାହାନ୍ତି । ତଥାପି ବହୁ ଭାବରେ ନବଜାତକ ସନ୍ତାନମାନଙ୍କ ପାଇଁ ଜାତକ ତାଳପତ୍ରରେ ଲେଖାଯିବାର ଦେଖାଯାଉଛି । ତେବେ ବର୍ତ୍ତମାନ ତାଳପତ୍ରର ସ୍ଥାନ କାଗଜ ନେଇଥିବାରୁ ଏବଂ ପୋଥିର ସ୍ଥାନ ପୁସ୍ତକ ନେଇଥିବାରୁ ଏଠାରେ ପୋଥିକୁ ପୁସ୍ତକ ବୋଲି ପାଠକମାନେ ମନେକରିବେ ।



ଏହି ପୋଥି ବା ପୁସ୍ତକମାନଙ୍କରେ ମଣିଷମାନଙ୍କ ପାଇଁ ଦୁନିଆର ସମସ୍ତ ପ୍ରକାର ବିଦ୍ୟା, ବୁଦ୍ଧି ଓ ଜ୍ଞାନ ସବୁ ଲିପିବଦ୍ଧ ହୋଇ ରଖାଯାଇଛି । ସେସବୁକୁ ଅଧ୍ୟୟନ କରି ଓ ସାଧ କରି ଉପଯୁକ୍ତ ସମୟରେ ଓ ଠିକଣା ଭାବରେ କାର୍ଯ୍ୟରେ ଲଗାଯାଇପାରୁଛି; କିନ୍ତୁ ଆମର ଢଗ ଅନୁସାରେ ତାର ମର୍ମ ହେଲା, ଯଦିଓ ବହି ଯୋଗାଇ ଦିଆଯାଇଛି, ପଚରାଯାଇଥିବା ପ୍ରଶ୍ନର ଉତ୍ତର ସେହି ବହିରେ ରହିଛି । ମାତ୍ର ଠିକଣା ସମୟରେ ଅର୍ଥାତ୍ ପରୀକ୍ଷା ଦେବା ସମୟରେ ତାହା କାମରେ ଆସୁନାହିଁ । ଏଥିରୁ ଜଣାପଡୁଛି ଯେ ପୁସ୍ତକରେ ଥିବା ବିଦ୍ୟା ସାଧ କରାଯାଇନାହିଁ । ସେହି ବିଦ୍ୟା ଯଥାସମୟରେ କାମରେ ଲାଗିପାରିନାହିଁ ।

ସେହିପରି ଅନ୍ୟ କଥାଟି ହେଲା ଧନ । ଏହା ଆମ ଦେଶର ପ୍ରଚଳିତ ମୁଦ୍ରା ଟଂକାକୁ ବୁଝାଇବ । ଏକ ଟଂକା ଓ ଦୁଇ ଟଂକାର ମୁଦ୍ରା ପ୍ରଚଳନ ସହିତ ଏକ ଟଂକାରୁ ଆରମ୍ଭ କରି ଏକହଜାର ଟଂକାର କାଗଜ ନୋଟ୍ ପ୍ରଚଳିତ ହେଉଛି । ଏହା ଆମମାନଙ୍କର କାରବାର ଓ ଦେଣନେଣ ଇତ୍ୟାଦି ପାଇଁ ଏକ ମାଧ୍ୟମ ଭାବେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରିଛି । ପୂର୍ବେ କେବଳ ଏକଟଂକା ପର୍ଯ୍ୟନ୍ତ ମୁଦ୍ରା ପ୍ରଚଳନ ଥିଲା, ଯଦ୍ୱାରା ନେବାଆଣିବା ପାଇଁ ଅସୁବିଧା ହେଉଥିଲା । ନୋଟ୍ ପ୍ରଚଳନ ଦ୍ୱାରା ସେ ଅସୁବିଧା ଦୂର ହୋଇଛି ।




ଟଂକା ମଣିଷର ସମସ୍ତ ଆବଶ୍ୟକତା ପୂରଣ କରିବା ସହ ବିପଦଆପଦ ତଥା ଜରୁରୀ ପରିସ୍ଥିତି ସମୟରେ ବହୁ ଉପକାରରେ ଲାଗିଥାଏ । ସେଥିପାଇଁ ମଣିଷ ତାର ଆୟରୁ କିଛି ଅଂଶ ସଞ୍ଚୟ କରି ରଖେ । ଆଉ ମଧ୍ୟ ଆବଶ୍ୟକତାଠାରୁ ଅଧିକ ଖର୍ଚ୍ଚ ନ କରିବାକୁ ଉପଦେଶ ଦିଆଯାଇଥାଏ । ସେହି ଗଚ୍ଛିତ ଅର୍ଥ ସନ୍ତାନମାନଙ୍କ ଶିକ୍ଷା ପାଇଁ, ସ୍ୱାସ୍ଥ୍ୟ ପାଇଁ ଓ ବିବାହ ଇତ୍ୟାଦି ଶୁଭକାର୍ଯ୍ୟରେ ବିନିଯୋଗ କରାଯାଏ । ଯଦି କେହି ସେହି ଅର୍ଥକୁ ଅନ୍ୟ କାହା ପାଖରେ ରଖିଥାଏ କିମ୍ବା ଧାର ଉଧାର ଦେଇ ଦେଇଥାଏ ଏବଂ ଏହି ସମୟରେ ମା' ବେମାର ପଡ଼ି ଡାକ୍ତରଖାନାରେ ପଡ଼ିଲେଣି କିମ୍ବା ସନ୍ତାନର ନାମ ଲେଖା ନୋଟିସ୍ ଆସିଲାଣି କିମ୍ବା ଝିଅର ବାହାଘର ଠିକ୍ ହୋଇଗଲାଣି; ଏପରି ସ୍ଥଳେ ଟଙ୍କା ଥିଲେ ମଧ୍ୟ ଆସି ପାରିଲା ନାହିଁ, ଠିକଣା ବେଳେ କାମରେ ଲାଗି ପାରିଲା ନାହିଁ, ତେବେ ସେ ଅର୍ଥର ବା ଧନର ମୂଲ୍ୟ ଆଉ କ'ଣ ?

ଏଥିପାଇଁ ଆମର ବିଜ୍ଞ ପୂର୍ବଜମାନେ ଏପରି କଥାମାନ କହି ଆମମାନଙ୍କୁ ସାବଧାନ କରିଦେବା ସହ ଉପଦେଶ ଦେଇ ଯାଇଅଛନ୍ତି ।

*ରାଜାବଗିଚା, କଟକ*

## ନୀତି ମୁକ୍ତାମାଳା

୧ – ଜଣକୁ ଖୁସି କରିବା ପାଇଁ ତିନୋଟି ଜିନିଷ ଦରକାର ହୁଏ । କ)– ମନଯୋଗ, ଖ)– ସ୍ନେହ ଏବଂ ଗ)– ପ୍ରଶଂସା ।

୨ – ଅସଂଖ୍ୟ ବନ୍ଧୁ କରିବା କିଛି ଅଲୌକିକ କିମ୍ବା ଆଶ୍ଚର୍ଯ୍ୟଜନକ ନୁହେଁ । ଆଶ୍ଚର୍ଯ୍ୟଜନକ ହେଉଛି ଏପରି ଗୋଟିଏ ବନ୍ଧୁ କରିବା, ଯିଏକି ସମସ୍ତେ ତୁମକୁ ତ୍ୟାଗ କଲାପରେ ତୁମ ସହିତ ରହିଛନ୍ତି ।

# ଉପଯୁକ୍ତ ରାଜା ଚୟନ

ଶ୍ରୀ ଶିବ ପ୍ରସାଦ ରାଉତ

ମହାରାଜ ବୀରବର୍ଦ୍ଧନ ନିଜର ଦୁଇ ପୁଅଙ୍କୁ ଡାକି କହିଲେ– '' ତୁମେ ଦୁହେଁ ଯାଅ, ଆମ ରାଜ୍ୟରେ ମୋ ପରେ କିଏ ରାଜା ହୋଇପାରିବ, ସେହିପରି ଏକ ସୁଯୋଗ୍ୟ ବ୍ୟକ୍ତି ଖୋଜିଆଣିବ । ହଁ, ଏ କଥା ମନେରଖ, ତୁମ ଦୁହିଁଙ୍କୁ ମୁଁ ଏକମାସ ସମୟ ଦେଲି । ଏହି ସମୟ ଅବଧିରେ ତୁମେ ରାଜା ହେବାପାଇଁ ଯୋଗ୍ୟ ବ୍ୟକ୍ତି ଠାବ କରିବ, ଯିଏକି ମୋ'ଠାରୁ ଆହୁରି ବେଶି ଯୋଗ୍ୟ ଓ ସୁଶାସକ ହୋଇଥିବ ।'' ମହାରାଜ ବୀରବର୍ଦ୍ଧନ ବାରମ୍ବାର ଗୁରୁତ୍ୱ ଦେଉଥିଲେ ଯେ 'ଠିକ୍ ଏକ ମାସ ସମୟ ମଧ୍ୟରେ, ଯାହାକୁ ହିଁ ଆଣିବାକୁ ହେବ । ନଚେତ୍ ମୁଁ ତୁମମାନଙ୍କର ଫେସଲା ବାଦ ଦେଇ କାର୍ଯ୍ୟ କରିଯିବି ।'



ପିତୃଭକ୍ତ, ରାଜଭକ୍ତ ଦୁଇ ରାଜକୁମାର ରାଜାଦେଶ ପାଳନ କରି ତତ୍କ୍ଷଣାତ୍ ପ୍ରସ୍ଥାନ କଲେ । ବୀରବର୍ଦ୍ଧନଙ୍କର ବିରାଟ ରାଜସଭା । ଭରା ସଭାସଦ୍‌ଗଣ ସମ୍ପୂର୍ଣ୍ଣ ନୀରବତା ମଧ୍ୟରେ ବସି ରହିଥାନ୍ତି । ମନ୍ତ୍ରୀ, ସେନାପତି, ରାଜଗୁରୁ, ସାମନ୍ତ, ବିଭିନ୍ନ ବର୍ଗର ଓ ବିଭିନ୍ନ ବିଭାଗର ମନ୍ତ୍ରୀ ସମସ୍ତେ ନୀରବ । କାରଣ ବୀରବର୍ଦ୍ଧନ ଜଣେ ମହାବୀର, ପ୍ରଜାଙ୍କୁ ପୁତ୍ରବତ୍ ପାଳନ୍ତି, କାହାକୁ ହେୟ ଦୃଷ୍ଟିରେ ଦେଖନ୍ତି ନାହିଁ । ବିଶେଷକରି କୌଣସି କାର୍ଯ୍ୟ କରିବା ପୂର୍ବରୁ ନିଶ୍ଚୟ ନିଜର ସଭାସଦ୍‌ବର୍ଗଙ୍କ ପରାମର୍ଶ ହିଁ ନିଅନ୍ତି । ମାତ୍ର ଆଜି ଏ କ'ଣ ! ରାଜା ଯଦିଓ ବୃଦ୍ଧ ହେଲେଣି, ତଥାପି କ୍ଷମତା ହସ୍ତାନ୍ତର କଥା ପୂର୍ବରୁ ଉଠାଇ ନ ଥିଲେ । ଆହୁରି ମଧ୍ୟ ବଡ଼ ରାଜକୁମାର ଜୟବର୍ଦ୍ଧନ ଓ ସାନ ରାଜକୁମାର ଶ୍ରୀବର୍ଦ୍ଧନ ଉଭୟେ ରୂପ, ଗୁଣ, ବୀରତ୍ୱ, ଦକ୍ଷତା, ପ୍ରଶାସନ– ସବୁକ୍ଷେତ୍ରରେ ଦୁହେଁ ଦୁହିଁଙ୍କୁ ଊଣା ନୁହନ୍ତି । ରାଜା ନିଜର ପୁତ୍ର ଜୟବର୍ଦ୍ଧନ ଓ ଶ୍ରୀବର୍ଦ୍ଧନ ମଧ୍ୟରୁ ନୂଆ ରାଜା ନିରୂପଣ ନ କରି, ପୁଣି ସେହିମାନଙ୍କ ଦ୍ୱାରା ନୂତନ ରାଜା ଚୟନ କରିବାକୁ କାହିଁକି କହିଲେ ! ସମସ୍ତେ ବିସ୍ମୟରେ ଥିଲେ । ମହାରାଜ ନୀରବତା ଭଙ୍ଗ କରି କହିଲେ– ''କ'ଣ ଆପଣମାନଙ୍କର କିଛି ପ୍ରଶ୍ନ କରିବାର ନାହିଁ ? ଯଦି ନାହିଁ, ଆଜିର ସଭାକୁ ଏଇଠି ରଖାଯାଉ ।''

ସମୟ ଗଡ଼ିଚାଲିଲା । ଦେଶସାରା ସମସ୍ତଙ୍କର ଉତ୍କଣ୍ଠା ବଢ଼ିଚାଲିଲା– ଆମର ସ୍ଥିତପ୍ରଜ୍ଞ ରାଜା ବୀରବର୍ଦ୍ଧନ ଏପରି ରହସ୍ୟମୟ ପରିବେଶ କାହିଁକି ସୃଷ୍ଟି କରିଛନ୍ତି । କ'ଣ ପାଇଁ ରାଜା ଦୁଇ ରାଜକୁମାର ମଧ୍ୟରୁ କାହାକୁ ରାଜା କରିବାକୁ ଚାହିଁଲେ ନାହିଁ । କିଏ ଏମିତି ପୁଣି ଆମର ରାଜା ହୋଇଯିବ ! ଏତାଦୃଶ ସଂଶୟ ଓ ଉଦ୍‌ବେଗ ମଧ୍ୟରେ ଏକମାସ ଅତିବାହିତ ହେଲା । ଉତ୍କଣ୍ଠାର ଚରମ ମୁହୂର୍ତ୍ତ ଉପଗତ । ପ୍ରଜାଏ ଖବର ପାଇଲେ ଯେ କନିଷ୍ଠ ରାଜକୁମାର ଶ୍ରୀବର୍ଦ୍ଧନ ଉପଯୁକ୍ତ ସମୟରେ ଫେରିଆସିଛନ୍ତି । ସଭାସଦ୍‌ଙ୍କ ସମ୍ମୁଖରେ ସେ ନୂଆ ରାଜାଙ୍କର ନାମ, ସଂପୂର୍ଣ୍ଣ ବିବରଣୀ ଏକ ମୁଦଦିଆ ଖୋଳରେ ପୂରାଇ ମନ୍ତ୍ରୀଙ୍କ ହସ୍ତରେ ଅର୍ପଣ କଲେ । ରାଜା

ମଧ୍ୟ ଆଦେଶଦେଲେ– ବଡ଼ ରାଜକୁମାର ନ ଫେରିବା ପର୍ଯ୍ୟନ୍ତ ଏହାକୁ ଗୁପ୍ତ ରଖାଯାଉ ।

ଏବେ ସମସ୍ତଙ୍କର ପ୍ରତୀକ୍ଷା ଜୟବର୍ଦ୍ଧନଙ୍କୁ । ରାଜା ମଧ୍ୟ ଅପେକ୍ଷାରେ ଅତିଷ୍ଠ ଓ ବିରକ୍ତ । ସମୟ ସୀମା ପାର କରିସାରିଛି । ଗୁପ୍ତଚର ଖବର ଦେଲା । ଯୁବରାଜ ଜୟବର୍ଦ୍ଧନ ଏବେ ଫେରିବା ସମ୍ଭବ ନୁହେଁ । କାରଣ ସେ ରାଜା ଚୟନ କରିବାକୁ ଯିବା ପରଦିନ ଦେଶର ପୂର୍ବାଞ୍ଚଳରେ ସମସ୍ତ ବିଦ୍ରୋହକୁ ଦମନ କରିବାରେ ମାସଟି କଟିଛି ଓ ସେଠାକାର ପରିସ୍ଥିତି ସମ୍ପୂର୍ଣ୍ଣ ନିୟନ୍ତ୍ରଣାଧୀନ । ତା'ପରେ ଏହି ତିନିଦିନ ହେଲା ଜୟବର୍ଦ୍ଧନ ବୈଦେଶିକ ଶତ୍ରୁର ମୁକାବିଲା କରୁଛନ୍ତି । ବିନା ସୈନ୍ୟରେ ପ୍ରଜାମାନଙ୍କୁ ଏକଜୁଟ୍ କରି ବଡ଼ ରାଜକୁମାର ଅଦ୍ଭୁତ ବୀରତ୍ୱ ଓ ଦକ୍ଷତାର ସହିତ ଆକ୍ରମଣକୁ ପଣ୍ଡ କରିଦେଇଛନ୍ତି । ଶତ୍ରୁ ପରାସ୍ତ ଓ ନୀହତ ମଧ୍ୟ । ଏବେ ରାଜକୁମାର ଆହତ ପ୍ରଜାମାନଙ୍କୁ ଉପଯୁକ୍ତ ଚିକିତ୍ସା ଓ ସେବା ଦେବାରେ ବ୍ୟସ୍ତ । ଇତି ମଧ୍ୟରେ ପିତା ବୀରବର୍ଦ୍ଧନ ରାଜା ଚୟନ ସମ୍ବନ୍ଧରେ ମତାମତ କ'ଣ ଓ ଶୀଘ୍ର ଫେରିଆସିବାକୁ ଦୂତ ପଠାଇଥିଲେ । ମାତ୍ର ଜୟବର୍ଦ୍ଧନ ସସମ୍ମାନ ଦୂତକୁ ଫେରାଇଦେଇ ସମ୍ବାଦ ଦେଇଛନ୍ତି କି, ''ମୁଁ ତ ଠିକ୍ ସମୟରେ ଫେରିପାରିନାହିଁ, ଏଣୁ ରାଜା ଚୟନର ମୋ ମତ ଆବଶ୍ୟକ ନାହିଁ । ମୁଁ ଆଉକିଛି ଦିନ ଏଠାରେ ରହିବା ଜରୁରୀ । ସାନଭାଇର ମତ ହିଁ ମୋ ମତ । ଏଣୁ ମୋ କଥା ବାଦ୍ ଦେଇ ପିତାଶ୍ରୀ ଓ ପୂଜ୍ୟ ସଭାସଦ୍‌ବର୍ଗ ନୂଆ ରାଜା ଚୟନ କରିଯାଆନ୍ତୁ । ସେମାନଙ୍କର ମତ ହିଁ ମୋର ଶିରୋଧାର୍ଯ୍ୟ ।''

ବଡ଼ ରାଜକୁମାରଙ୍କର ଏତାଦୃଶ କାର୍ଯ୍ୟ ଓ ଶାଳୀନତାଭରା ସମ୍ବାଦରେ ପ୍ରଜା ଓ ସଭାସଦ୍ ବର୍ଗ ସହିତ ସ୍ୱୟଂ ରାଜା ମଧ୍ୟ ଅଭିଭୂତ । ତଥାପି ସର୍ତ୍ତ ଅନୁଯାୟୀ ସାନ ରାଜକୁମାର ଶ୍ରୀବର୍ଦ୍ଧନଙ୍କ ମତରେ ସେ ନୂଆ ରାଜା କିଏ ବୋଲି ମତାମତର ମୁଦ ଖୋଲାଗଲା । ସାରାଦେଶ ସ୍ତମ୍ଭୀଭୂତ, ବିସ୍ମିତ ଓ ଆହ୍ଲାଦିତ ହୋଇଗଲେ ଯେ ଶ୍ରୀବର୍ଦ୍ଧନ ବଡ଼ଭାଇ ଜୟବର୍ଦ୍ଧନଙ୍କୁ ହିଁ ଉପଯୁକ୍ତ ରାଜା ବୋଲି ମତ ଦେଇଥିଲେ ।

*ବଛଦା, ଜଗନ୍ନାଥପୁର, ବାସୁଦେବପୁର,*
*ଭଦ୍ରକ-୭୫୬୦୪୬*

---

## ଶିଷ୍ଟାଚାର

ଶ୍ରୀ ଲକ୍ଷ୍ମୀଧର ମହାରଣା

ଶିଷ୍ଟ ହେବାପାଇଁ ମୁହିଁ    ବିନମ୍ରତା ଗୁଣ
ପ୍ରଥମରୁ ପ୍ରକାଶିବି    ସାଙ୍ଗମାନେ ଶୁଣ ।

ବିବେକର ଡାକ ଶୁଣି    ତେଜି ଅହଙ୍କାର
ଗୁରୁଜନେ ଜଣାଇବି    ନମ୍ର ନମସ୍କାର ।

ବିନମ୍ରତା, ସରଳତା,    ମଣିଷପଣରେ
ଆଦରିବି ସଫଳତା    ପାଇଁ ଜୀବନରେ ।

ବୁଦ୍ଧି କାମ ନ କରିଲେ    ବିନମ୍ରତା ବଳେ
ବିପଦ ମୋ ଦୂର ହେବ    ଏଇ ଧରା ତଳେ ।

ଜୀବନରେ ସଫଳତା    ଶିଡ଼ି ଚଢ଼ିବାରେ
ସବୁଠାରେ ପ୍ରକାଶିବ    ମୋ ବିନମ୍ରତାରେ ।

ଶିଷ୍ଟାଚାର ନୀତି ଯେତେ    ପାଳିବି ମୁ ତାହା
ମୋ'ପାଇଁ ସହାୟ ହେବେ    ପ୍ରଭୁ ଚଉବାହା ।

ରାମଗଡ଼ (ଟାଙ୍ଗି), କୋଟସାହି, କଟକ-୭୫୪୦୨୨

---

**ଉତ୍ତର–** ୧) ବୈଜ୍ଞାନିକ, ୨) ବୈଧାନିକ, ୩) ବୈମାନିକ, ୪) ଆଧୁନିକ, ୫) ଅବୈତନିକ, ୬) ଦାର୍ଶନିକ, ୭) ଦୈନିକ, ୮) ପୌନଃପୁନିକ, ୯) ପ୍ରଶାସନିକ ।



# ମାନବ ସମାଜକୁ ଚିଠିଟିଏ

ଇଂ ରଘୁନାଥ ପ୍ରସାଦ ଦାସ

ହେ ମାନବସମାଜ !

ପୃଥିବୀମାତା ଅସ୍ପଷ୍ଟସ୍ୱରରେ ତୁମକୁ ଶୁଣେଇଲା, ତୁମେ ଶୁଣିଲ ନାହିଁ । ପୁଣି ପୃଥିବୀମାତା ତୁମକୁ କହିଲା, ତୁମେ ବି ଶୁଣିଲ ନାହିଁ । ପୃଥିବୀମାତା ଚିତ୍କାର କଲା, ତୁମେ ତାକୁ ଆଡ଼େଇଦେଲ ଏବଂ ମୁଁ ଜନ୍ମନେଲି ।

ମୁଁ ତୁମକୁ ଜାଗ୍ରତ କରିବାକୁ ଜନ୍ମନେଲି । ମୁଁ ତୁମକୁ ଦଣ୍ଡଦେବାକୁ ଜନ୍ମ ନେଇ ନଥିଲି । ପୃଥିବୀ ଭୀଷଣ ଜଳପ୍ଲାବନ ଦ୍ୱାରା ସାହାଯ୍ୟ ପାଇଁ କ୍ରନ୍ଦନ କଲା । ଚତୁର୍ଦିଗ ଅଗ୍ନିଦ୍ୱାରା ଧ୍ୱଂସ ହେଲା, ପ୍ରବଳ ଝଡ଼ ଘୂର୍ଣ୍ଣିବାତ୍ୟା କଲା, ତୁମେ ଶୁଣିଲ ନାହିଁ । ସାମୁଦ୍ରିକ ପ୍ରାଣୀମାନେ ପ୍ରଦୂଷଣର ଜ୍ୱାଳାରେ ଜଳରେ ମୃତ୍ୟୁବରଣ କଲେ । ହେ ମାନବ; ତଥାପି ତୁମେ ଶୁଣିଲ ନାହିଁ । ବରଫ ତରଳେଇ ସତର୍କ କଲା, ମରୁଡ଼ି ହେଲା; ତୁମେ ଶୁଣିଲ ନାହିଁ । ପୃଥିବୀ ଆଉ କେତେ ନକାରାତ୍ମକ ଘଟଣା ଭୋଗକଲା, ତୁମେ ଶୁଣିଲ ନାହିଁ ।

ଦ୍ୱନ୍ଦ୍ୱ କଳହ ଲାଗିରହିଲା; ତଥାପି ତୁମେ ତୁମ ଜୀବନକୁ ଭୋଗ କରିଚାଲିଲ । ତୁମେ ତୁମର ଆଇ. ଫୋନକୁ ଧରି ସବୁବେଳେ ଜୀବନକୁ ଉପଭୋଗ କଲ; ପୃଥିବୀ ପୂର୍ବରୁ ଯେଉଁ ଦୁଃଖ ଜଣାଇଥିଲା, ତୁମେ ଶୁଣିଲ ନାହିଁ । ତା' ପାଇଁ ତୁମର ବ୍ୟସ୍ତତା ନଥିଲା ।

ତେଣୁ ମୁଁ ଆସିଗଲି ବର୍ତ୍ତମାନ ।

ପୃଥିବୀର ଗତିପଥକୁ ଅବରୋଧ କଲି । ତୁମକୁ ଶୁଣେଇବାକୁ ବାଧ୍ୟହେଲି । ତୁମକୁ ମୋର ଆଶ୍ରୟ ନେବାକୁ ବାଧ୍ୟକଲି । ତୁମର ବସ୍ତୁବାଦୀ ଚିନ୍ତାଧାରାକୁ ବନ୍ଦ କରିଦେଲି । ତୁମେ ବର୍ତ୍ତମାନ ନିଜର ସ୍ୱାର୍ଥପରତାକୁ ନେଇ ବଞ୍ଚିବାପାଇଁ ଚିନ୍ତାକଲ ।

ବର୍ତ୍ତମାନ କିଭଳି ତୁମକୁ ଅନୁଭୂତ ହେଉଛି ?

ମୁଁ ତୁମକୁ ଜ୍ୱର ଦେଲି, ପୃଥିବୀରେ ଅଗ୍ନିଉଦ୍‌ଗୀରଣ ହେବାର ଅନୁଭବ ତୁମେ ଜାଣିଲ । ଯେଉଁଭଳି ପ୍ରଦୂଷଣ ପୃଥିବୀର ନିଶ୍ୱାସ ରୁଦ୍ଧ କରିଥିଲା, ସେହିପରି ମୁଁ ତୁମର ନିଶ୍ୱାସ ରୁଦ୍ଧ କଲି । ମୁଁ ତୁମକୁ ଦୁର୍ବଳ କରିଦେଲି, ଯେଉଁଭଳି ପ୍ରତିଦିନ ପୃଥିବୀ ଦୁର୍ବଳ ହେଉଥିଲା ।

ମୁଁ ତୁମର ଆରାମଦାୟକ ଜୀବନ ନେଇଗଲି । ତୁମର ବାହାରକୁ ଗତାଗତ ବନ୍ଦ କରିଦେଲି । କାରଣ ତୁମେ ପୃଥିବୀଗ୍ରହର ଯନ୍ତ୍ରଣାକୁ ଭୁଲିଯାଇଥିଲ ।

ମୁଁ ପୃଥିବୀକୁ ବନ୍ଦ କରିଦେଲି ।

ବର୍ତ୍ତମାନ ପୃଥିବୀରେ ପ୍ରଦୂଷଣ ନାହିଁ । ନୀଳ ଆକାଶ ଖୁବ୍ ପରିଷ୍କାର ପରିଚ୍ଛନ୍ନ ଓ ସୁନ୍ଦର ଦେଖାଯାଉଛି । କଳକାରଖାନାରୁ ନିର୍ଗତ ଧୂମବାୟୁ ପ୍ରଦୂଷଣ କରୁନାହିଁ । ଜଳ ପରିଷ୍କାର ଓ ମାଛମାନେ ମହାଆନନ୍ଦରେ ଘୂରିବୁଲୁଛନ୍ତି । ପଶୁପକ୍ଷୀ ମହାଆନନ୍ଦରେ ବିଚରଣ କରୁଛନ୍ତି ।

ସମୟ ଆସିଛି, ତୁମେ ଏବେ ଚିନ୍ତାକରିବ, ତୁମ

ଜୀବନର କ'ଣ ଗୁରୁତ୍ୱ ରହିଛି । ମୁଁ ବାରମ୍ବାର କହିଛି ଯେ ମୁଁ ତୁମକୁ ଦଣ୍ଡ ଦେବାକୁ ଆସିନାହିଁ । ମୁଁ ଆସିଛି ତୁମକୁ ଜାଗ୍ରତ କରିବାପାଇଁ ।

ଯେତେବେଳେ ଏସବୁ ଦୂର ହୋଇଯିବ, ମୁଁ ଚାଲିଯିବି । ଦୟାପୂର୍ବକ ଏହି ମୁହୂର୍ତ୍ତସବୁକୁ ତୁମେ ମନେପକେଇବ ।

ହେ ମାନବ ! ଜାଗ୍ରତ ହୁଅ । ପୃଥିବୀର କଥା ଶୁଣ । ତୁମ ଆତ୍ମାର କଥା ଶୁଣ । ପୃଥିବୀକୁ ପ୍ରଦୂଷଣରୁ ରକ୍ଷାକର । ପରସ୍ପର ମଧ୍ୟରେ ଯୁଦ୍ଧ ବନ୍ଦକର । ବସ୍ତୁବାଦୀ ହୁଅନାହିଁ । ତୁମ ପଡ଼ୋଶୀଙ୍କୁ ଭଲପାଅ । ପୃଥିବୀର ଏବଂ ଏହାର ପ୍ରାଣୀମାନଙ୍କର ଯତ୍ନ ନିଅ । ସୃଷ୍ଟିକର୍ତ୍ତାଙ୍କ ଉପରେ ବିଶ୍ୱାସ ରଖ । କାରଣ ପରବର୍ତ୍ତୀ ସମୟରେ ମୁଁ ଆହୁରି ଶକ୍ତିଶାଳୀ ହୋଇ ଆସିପାରେ ।

**-'କରୋନା ଭାଇରସ୍'**

(ViVienne R Reich ଙ୍କ ଲେଖାର ମର୍ମାନୁବାଦ)

---

## ଧନ୍ଦା

ତିନୋଟି ଅକ୍ଷରେ ନାମ ତାହାର
ସମସ୍ତଙ୍କ ଡର ସେ ଭୟଙ୍କର ।
ପ୍ରଥମ ତୃତୀୟ ଦିଅ ମିଶାଇ
ଲୁଗା ଚିରିଗଲେ ତାହା ହୁଅଇ ।
ତୃତୀୟ ପ୍ରଥମ ମିଶାଅ ଭାଇ
ନିଶ୍ୱାସ ପ୍ରଶ୍ୱାସ ସେଥି ଚାଲଇ ।
ଦ୍ୱିତୀୟ ତୃତୀୟ ମିଶିଲେ ହେବ
ହିନ୍ଦୀରେ କାନ୍ଦିବା ସେ ବୁଝାଇବ ।
ଦ୍ୱିତୀୟ ପ୍ରଥମ କରିଲେ ଯୋଗ
ବନ୍ଦ ହେବାକୁ ସେ ବୁଝାଏ ଆଗ ।
ଏହି ଧନ୍ଦାଟିକୁ ଯିଏ କହିବ
ଧନ୍ୟବାଦ ସବୁଠାରୁ ପାଇବ ।

- ଶ୍ରୀ ଶତ୍ରୁଘ୍ନ ପଟ୍ଟନାୟକ, ଝାଞ୍ଜିରୀମଙ୍ଗଳା




ଏ ଜଗତରେ ଜନସମାଜ ପରସ୍ପର ଉପରେ ନିଶ୍ଚୟ ନିର୍ଭରଶୀଳ ଏବଂ ପ୍ରକୃତି ଉପରେ ମଧ୍ୟ ନିର୍ଭରଶୀଳ ।

ପୂର୍ବରୁ ଆମେ ଯନ୍ତ୍ରସମାଜ ଉପରେ ଏତେଟା ନିର୍ଭରଶୀଳ ନଥିଲେ; ମାତ୍ର ବର୍ତ୍ତମାନ ଯନ୍ତ୍ର ସଭ୍ୟତା ଦ୍ରୁତଗତିରେ ମାନବ ସମାଜକୁ କାବୁ କରିସାରିଲାଣି । ଆମେ ପୂର୍ବରୁ ହାତପଙ୍ଖା ଉପରେ ନିର୍ଭର କରୁଥିଲେ । ସେତେବେଳେ କ'ଣ ଗରମ ହେଉ ନ ଥିଲା ? ହେଉଥିଲା; ମାତ୍ର ହାତପଙ୍ଖାରେ ଆମେ ସନ୍ତୁଷ୍ଟ ରହୁଥିଲୁ । ବିଦ୍ୟୁତ ପଙ୍ଖା ଆସିଲାପରେ ଆମର ଆରାମ ବଢ଼ିଗଲା । ଏ.ସି. ବାହାରିଲା ପରେ ଆହୁରି ଆରାମ ପାଇଲେ । ବର୍ତ୍ତମାନ ତା' ବିନା ଚଳିପାରୁନେ ।

ସେମିତି ରିମୋଟ୍, ମୋବାଇଲ, ରୋଷେଇ ଉପକରଣ ଇତ୍ୟାଦି ଇତ୍ୟାଦିକୁ ନେଇ ଆମର ଆରାମ ବଢ଼ି ବଢ଼ି ଚାଲିଛି । ଏହା ବ୍ୟତୀତ ଆମେ ପରସ୍ପର ଉପରେ ମଧ୍ୟ ନିର୍ଭରଶୀଳ– ଡାକ୍ତର, ବିଦ୍ୟୁତ୍ କର୍ମଚାରୀ, ପୁଲିସ୍, ରାସ୍ତା, ସଫେଇ କର୍ମଚାରୀ ବା ମ୍ୟୁନିସିପାଲିଟି ଇତ୍ୟାଦି ଇତ୍ୟାଦି ।

ବର୍ତ୍ତମାନ କରୋନା ଆକ୍ରମଣର ଭୟାନକ ପରିସ୍ଥିତିରେ ଆମେ ଡାକ୍ତର, ପୁଲିସ୍ ତଥା ସଫେଇ କର୍ମଚାରୀଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରୁଛେ । ଲକ୍ଷ ଲକ୍ଷ ଲୋକ ଆମ ବିଶ୍ୱ ଜଗତରେ କରୋନା ଆକ୍ରାନ୍ତ ଭାବେ ବର୍ତ୍ତମାନ ଚିହ୍ନଟ ହେଉଛନ୍ତି । ଦିନକୁ ଦିନ ତାହା ବୃଦ୍ଧି ପାଇବାରେ ଲାଗିଛି ।

ତେଣୁ ବର୍ତ୍ତମାନ ଡାକ୍ତର ତଥା ପୁଲିସ୍ ଓ ସଫେଇ

କର୍ମଚାରୀଙ୍କର ଦାୟିତ୍ୱ ଖୁବ୍ ବଢ଼ିଯାଇଛି । ଡାକ୍ତରମାନେ ଦିନରାତି କରୋନା ରୋଗୀମାନଙ୍କର ସେବାରେ ଲାଗିଛନ୍ତି । ପୁଲିସ୍ ତାଙ୍କର ଜୀବନକୁ ପାଣିଛଡ଼େଇ ଚତୁର୍ଦ୍ଦିଗରେ ସତର୍କ ଦୃଷ୍ଟି ରଖିଛନ୍ତି । ଘରୁ ବାହାରିବାକୁ ସମସ୍ତଙ୍କୁ ମନା । ଏସବୁକୁ ଦୃଷ୍ଟିରେ ରଖି ଆମେ ଏହି ନିୟମକୁ କଡ଼ାକଡ଼ି ଭାବେ ପାଳନ କଲେ ଏବଂ ଏଥିସହିତ ଏହି ଦେଶସେବକ-ମାନଙ୍କର ସହଯୋଗ ନେଲେ ହିଁ ଆମେ ଏ ଯୁଦ୍ଧରେ ଜୟଲାଭ କରିପାରିବା ।

ଶୁଣିଲେ ଆଶ୍ଚର୍ଯ୍ୟ ଲାଗେ ଯେ ଜଣେ ଜଣେ ସେବିକା ତାଙ୍କର ଛୋଟ ପିଲାଙ୍କୁ ଘରେ ଛାଡ଼ି, ରୋଗଗ୍ରସ୍ତ ବାପା, ମାଙ୍କୁ ଛାଡ଼ି ରୋଗୀ ସେବାରେ ଲାଗିଛନ୍ତି । ଏସବୁ ଜାଣିଲା, ଦେଖିଲା ପରେ କେବେ ଆମର ଇଚ୍ଛାହେବ ସେମାନଙ୍କ ପ୍ରତି କୁବାକ୍ୟ ପ୍ରୟୋଗ କରିବାପାଇଁ ? ଯେଉଁମାନେ ଆମର ଜୀବନ ରକ୍ଷା କରିବାପାଇଁ ପ୍ରାଣପଣେ ଲାଗିଛନ୍ତି, ସେମାନେ ଆମର ଦେଶରକ୍ଷାକାରୀ ସୈନିକଙ୍କଠାରୁ କିଛି କମ୍ ନୁହଁନ୍ତି– ଏତିକି ଆମର ବୁଝିବା ଦରକାର ।

ତାଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିବା, ତାଙ୍କୁ କୃତଜ୍ଞତା ଜଣାଇବା, ତାଙ୍କୁ ସମସ୍ତ ସୁବିଧା ସୁଯୋଗ ସହିତ ସହଯୋଗ କରିବା ଆମର ଜନସାଧାରଣଙ୍କର କର୍ତ୍ତବ୍ୟ ନୁହେଁ କି ?

ଭାବିଲେ ଲଜ୍ଜାଲାଗେ, ଜନସାଧାରଣ ସେମାନଙ୍କର ମହତ୍ ସେବା ପ୍ରତି ନଜର ଦେଉନାହାନ୍ତି; ବରଂ ଏହାର ବିପରୀତ ଆଚରଣ ଦେଖାଉଛନ୍ତି ।

ଏବେ ଆସନ୍ତୁ, ଏ ବିପଦବେଳେ ସେମାନଙ୍କୁ ପୂର୍ଣ୍ଣପ୍ରାଣରେ ସହଯୋଗ କରିବା ଏବଂ ତାଙ୍କର ଅବଦାନ ଲାଗି ତାଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜଣାଇବା– ଏହାହିଁ ଆମର ଧ୍ୟେୟ ହେଉ ।

**ଅନସୂୟା ନନ୍ଦ**



ଆମେରିକା ମହାଦେଶ, ଚିକାଗୋର 'ରସ୍ ହସ୍‌ପିଟାଲ୍'ରେ କାର୍ଯ୍ୟ କରନ୍ତି ଓଡ଼ିଆ ଡାକ୍ତର ସିଦ୍ଧାର୍ଥ ଷଡ଼ଙ୍ଗୀ। ସମ୍ପ୍ରତି ଏକ କୋଭିଡ୍ ଚିକିତ୍ସାଳୟରେ ରୋଗୀ ସେବାରେ ଲାଗିଛନ୍ତି । ତାଙ୍କଠାରୁ ପରୋକ୍ଷରେ ପ୍ରାପ୍ତ ସୂଚନା ଅନୁଯାୟୀ ଠିକ୍ ଭାରତୀୟ ଡାକ୍ତରଙ୍କ ପରି ସେଠାରେ ମଧ୍ୟ ଡାକ୍ତରମାନେ ଦିନରାତି ଏକ କରି, କରୋନା ଆକ୍ରାନ୍ତଙ୍କୁ ସେବା ଯୋଗାଇ ଦେଉଛନ୍ତି । ଚିକାଗୋର କୌଣସି ଡାକ୍ତର ରୋଗୀ ସେବା ସାରି ଘରକୁ ଫେରିଲା ବେଳକୁ ପଡ଼ୋଶୀମାନେ ଫଳ, ଫୁଲ, କେକ୍ ପ୍ରଭୃତି ଖାଦ୍ୟ ଧରି ହାଜର ହୋଇଯାଉଛନ୍ତି ।

ଡାକ୍ତରଙ୍କୁ ଧନ୍ୟବାଦ ଦେବାପାଇଁ ଲୋକେ ନିଜ ଘର ବାଲ୍‌କୋନୀରେ ଠିଆ ହୋଇ ରହିବା ଏବେ ସେଠାରେ ନିହାତି ଏକ ସାଧାରଣ ଦୃଶ୍ୟ; କିନ୍ତୁ ଆମର ଏଠି ଏହାର ବିପରୀତ ଦେଖିବାକୁ ମିଳୁଛି । ଏହିସବୁ ଘଟଣା ସାମନାକୁ ଆସିଲେ ମନରେ ପ୍ରଶ୍ନଟିଏ ଉଙ୍କିମାରେ– ....କେବେ ସୁଧୁରିବା ଆମେମାନେ ?????




ଅଷ୍ଟ୍ରେଲିଆର ମେଲବୋର୍ଣ୍ଣ ଠାରେ ଥିବା ବର୍କେଷ୍ଟ୍ରିଟ୍‌ର ଏକ ଡାକ୍ତରଖାନାରେ ଲେଖାଯାଇଛି-ଓଡ଼ିଶାର ଡାକ୍ତରମାନଙ୍କୁ ଧନ୍ୟବାଦ । ଦେଖନ୍ତୁ, ସେମାନଙ୍କର କେତେ ମହାନତା !



## ଟାଇଁ ଟାଇଁ ଖରା ତତାଏ ଧରା

ଶ୍ରୀ ପ୍ରଶାନ୍ତ କୁମାର ଦାଶ

ଶୁଖିଲା ଗଛ ତାତିଲା ଧରା
ହତାଶ ପଶୁପକ୍ଷୀ
ଫେରି ତ ଗଲା ବସନ୍ତ ଋତୁ
ସଭିଙ୍କୁ ଦେଇ ଠକି ।

ସୂରୁଯ ଉଇଁ ଶୋଷିଲା ପାଣି
ଶୁଖିଲା ନଈନାଳ
ବହିଲା ଝାଞ୍ଜି ବଢ଼ିଲା ତାତି
ଆସିଲା ଖରା କାଳ ।

ଫୁଟିଲା ମଲ୍ଲୀ ଛୁଟାଇ ବାସ
ଲାଗିଲା ଭୋକ ଶୋଷ
ଅଂଶୁଘାତର ବଢ଼ିଲା ଭାଉ
ଧରାରେ ଖରା ରୋଷ ।

ଗଛ ତ ନାହିଁ ଛାଇ ତ ନାହିଁ
ଖରାକୁ ମାଡ଼େ ଡର
ସତେକି ନିଆଁ ଆକାଶୁ ଖସେ
ତାତି ଉଠଇ ଘର ।

ପଖାଳ, ପଣା, ପାଣି, ପଇଡ଼
ମିଶିରି ପାଣି ଲସି
ଦହି ଲେମ୍ବୁର ପାଣି ପିଅନ୍ତି
ସଭିଏଁ ଘରେ ବସି ।

ଶୁଖିଲା ଥୁଣ୍ଟା ଉଜୁଡ଼ା ଦିଶେ
ଗାଆଁର ସେଇ ବନ
ଗରମ ଟିକେ ଖାଇବା ପାଇଁ
ଲୋଡ଼ଇ ନାହିଁ ମନ ।

ଦିନରେ ଖରା ତାତି ବଢ଼ଇ
ରାତିକୁ ତାତି କମେ
ଥଣ୍ଡା ପରଶେ ମଜା ହରଷେ
ଲୋକଙ୍କ ଭିଡ଼ ଜମେ ।

ଫେରିଲେ ଖରା ଶୀତଳ ଧରା
ହେବ ବରଷା ପାଇଁ
ବରଷା ଜଳ ପିଇବା ପାଇଁ
ମାଟି ରହିଛି ଚାହିଁ ।

*କୁଞ୍ଜାର, ସଙ୍ଗଲାଇ, ପିପିଲି, ପୁରୀ-୭୫୨୧୦୪*

---

## ମାଛକୁ କହିଲା କଇଁ

ଲକ୍ଷ୍ମୀପ୍ରିୟା ଦାସ

ନାଲି କଇଁ ଓ ଧଳା କଇଁ ଭଲ ବନ୍ଧୁ । ଦୁଇଜଣଙ୍କର ପସନ୍ଦ ଏକାପ୍ରକାରର । ଆକାଶର ଜହ୍ନ, ତାରା ଦେଖିବାକୁ ଉଭୟଙ୍କୁ ଭଲଲାଗେ । ସେଥିପାଇଁ ଦୁଇଜଣଯାକ ରାତିସାରା ସାଙ୍ଗହୋଇ ଆକାଶକୁ ଚାହିଁରହନ୍ତି । ରାତିରେ ଶୋଉ ନ ଥିବାରୁ ଦିନସାରା ଘୁମାନ୍ତି ।

ସେମିତି ଦିନେ ଘୁମାଉ ଘୁମାଉ ଦୁଇଜଣ ଶୁଣିଲେ କଉମାଛ ଶେଉଳ ମାଛକୁ କହୁଛି– କଇଁଫୁଲ ଫୁଟିବାରୁ ପୋଖରୀଟା ଭାରି ସୁନ୍ଦର ଦିଶୁଛି । ଅନେକ କିଛି କହିବାକୁ



ଆମେ ଚାହିଁରହୁ । ଅପରିଷ୍କାର ଜିନିଷ ଅପେକ୍ଷା ପରିଷ୍କାର ଜିନିଷ ସବୁରି ପ୍ରିୟ ନୁହେଁ କି ?'' ମୁହଁ ଶୁଖାଇ ଶେଉଳ କହିଲା– ''ଆମେ ଜଳଚର ଜୀବ । ପଙ୍କ ଆମର ପ୍ରିୟ ।''

ଧଳାକଇଁ ଓ ନାଲିକଇଁ ଦୁଇଜଣଯାକ ଏକାସ୍ୱରରେ କହିଲେ– ''ଆରେ ସେକଥା ନୁହେଁ । ଏବେ ସବୁଠି ପଲିଥିନ୍‌ର ଭିଡ଼ ବେଶି ଅଳିଆ କରୁଛି । ଦେଖୁନ, ଆମର ଏଇ ପୋଖରୀରେ କେତେ ପ୍ରକାରର ଜରି (ବିସ୍କୁଟ ପ୍ୟାକେଟ୍‌ର, ହଳଦୀର, ପୁରଣା ପାଣି ବୋତଲ) ରହିଛି ! ସେସବୁ ଦେଖିଲେ ଅଣନିଶ୍ୱାସୀ ଲାଗେ । ଦିନରେ ଚାରିଆଡ଼କୁ ଚାହିଁଲେ ଭାରି ବିରକ୍ତ ଲାଗେ । ସେଥିପାଇଁ ଦିନସାରା ଶୋଇପଡ଼ିଲେ ଶାନ୍ତି ।''

ଇଚ୍ଛା ହେଉଥିଲେ ବି ନିଦରେ ପାଟି ଫିଟିଲାନି ଧଳାକଇଁର । ସନ୍ଧ୍ୟାରେ ନିଦ ଭାଙ୍ଗିବାରୁ ଆଗ କଉମାଛକୁ ଡାକ ପକାଇ କହିଲା– ''ତୁ ଯାହା କହୁଥିଲୁ ମୁଁ ସବୁ ଶୁଣିଛି । ସେସବୁ ମିଛ । ପୋଖରୀ ନଥିଲେ ମୋର ଜନ୍ମ ହୋଇପାରି ନଥାନ୍ତା । ତେଣୁ ମୋ ଯୋଗୁଁ ପୋଖରୀ ନୁହେଁ, ପୋଖରୀ ଯୋଗୁଁ ମୁଁ ସୁନ୍ଦର ।''

ସବୁ ଶୁଣି ଶେଉଳ ମାଛ କହିଲା– ''ପୋଖରୀ ନଥିଲେ ଆମେ କ'ଣ ଥାଆନ୍ତୁ କି ?'' ଖିଲିଖିଲି ହସି କଇଁ କହିଲା– ''ଖରାଦିନେ ପାଣି ଶୁଖିଗଲେ ତୁମେ ପଙ୍କରେ ପୋତିହୋଇ ରହିଥାଅ । ତେଣୁ ପୋଖରୀ ନ ଥିଲେ ତୁମର କିଛି ଅସୁବିଧା ନାହିଁ ।'' କଉ ଓ ଶେଉଳ ପରସ୍ପରକୁ ଚାହୁଁ ଚାହୁଁ କଉ କହିଲା– ''ସେକଥା ଛାଡ଼, ତୁ ସବୁବେଳେ ଆକାଶକୁ କାହିଁକି ଚାହୁଁ ? ପାଣିରେ ବି ସୁନ୍ଦର ଜୀବଜନ୍ତୁ ଅଛନ୍ତି, ତାଙ୍କୁ ଦେଖୁନୁ କାହିଁକି ? ମିଞ୍ଜି ମିଞ୍ଜି କରୁଥିବା ତାରାଠାରୁ ପାଣିରେ ଥିବା ମାଛମାନେ ଅଧିକ ସୁନ୍ଦର ଦିଶିବେ ।'' ଏପର୍ଯ୍ୟନ୍ତ ଚୁପ୍ ଥିବା ନାଲି କଇଁ କହିଲା– ''ଆକାଶ ସୁନ୍ଦର ବୋଲି ଆମେ ଚାହିଁ ରହୁନୁ । ଆକାଶ ସବୁବେଳେ ପରିଷ୍କାର ଦିଶେ, ସେଥିପାଇଁ

ସମସ୍ତଙ୍କ କଥା ଚୁପ୍‌ଚାପ୍ ଶୁଣିଥିଲା ବତକ । ସେ କହିଲା ଯେ ସତରେ, ପଲିଥିନ୍ ସମସ୍ତଙ୍କ ପାଇଁ ଅସୁବିଧାର କାରଣ ହୋଇଛି । ଆମ ଦେଶରେ ଏତେ ପରିମାଣରେ ପ୍ଲାଷ୍ଟିକ୍ ବ୍ୟବହାର କରାଯାଉଛି ଯେ, ଏହିପରି ବ୍ୟବହାର କରିଚାଲିଲେ କିଛିବର୍ଷ ପରେ ମାଟି ବି ଦେଖିବାକୁ ମିଳିବନି । ଖାଲି ଦେଖାଯିବ ପ୍ଲାଷ୍ଟିକର ଆସ୍ତରଣ । କାରଣ ଜୈବିକବସ୍ତୁ ପରି ଏହା କ୍ଷୟ ହୁଏନାହିଁ । ଏଥିରୁ ନିର୍ଗତ କେମିକାଲ୍ ଫୁସ୍‌ଫୁସ୍ ସଂକ୍ରମଣ ଓ କ୍ୟାନସର ପରି ମାରାତ୍ମକ ରୋଗ ସୃଷ୍ଟିର କାରଣ ହୋଇପାରେ । ଭୂତଳ ଜଳକୁ ମଧ୍ୟ ଏହା ଦୂଷିତ କରୁଛି । ପ୍ଲାଷ୍ଟିକ୍ ସୃଷ୍ଟି କରୁଥିବା ବିପଦକୁ ଦୃଷ୍ଟିରେ ରଖି ସରକାର ପ୍ଲାଷ୍ଟିକ୍ ବର୍ଜନ କରିବାକୁ ନିଷ୍ପତ୍ତି ନେଇଛନ୍ତି । କେହି ମଧ୍ୟ ପ୍ଲାଷ୍ଟିକର ବିକ୍ରି, ଉତ୍ପାଦନ ଓ ଆମଦାନୀ କରିବେ ନାହିଁ । ଗଚ୍ଛିତ କରି ରଖିପାରିବେ

ନାହିଁ ମଧ୍ୟ । ଏହି ନିୟମକୁ ନ ମାନିଲେ ଜୋରିମାନା ଓ ଜେଲ୍‌ଦଣ୍ଡର ବ୍ୟବସ୍ଥା ଅଛି । ପୋଖରୀ କୂଳରେ ଥିବା ମନ୍ଦିରରେ ହେଉଥିବା ସଭାରୁ ଏସବୁ କଥା ବତକ ଶୁଣି ଆସିଥିଲା । ନାଲି କଇଁ କହିଲା– ''ସରକାରୀ ସ୍ତରରେ ସଚେତନତା ସୃଷ୍ଟି କରାଯିବା ସହିତ ସବୁ ମଣିଷ ବୁଝିବା ନିତାନ୍ତ ଜରୁରୀ । ସୁସ୍ଥ ପରିବେଶ ପାଇବାକୁ ହେଲେ ପ୍ଲାଷ୍ଟିକ ଛାଡ଼ିବାକୁ ପଡ଼ିବ ନିଶ୍ଚୟ ।'' ଧଳାକଇଁ କହିଲା– ''ହଁ, ଭଲଦିନ ନିଶ୍ଚୟ ଆସିବ ଭାବି ଖୁସିରେ ରହିବାକୁ ଆମେ ସମସ୍ତେ ଚେଷ୍ଟାକରିବା । ଏବେ ଦେଖ ଆକାଶରେ ଜହ୍ନ ଆସିଲାଣି– ତମେ ସମସ୍ତେ ନିଜ ନିଜ ଘରକୁ ଯାଅ, ଆମେ ଦୁଇ ଜଣ ଜହ୍ନତାରା ଦେଖିବୁ ।'' ବତକ କହିଲା– ''ସେ ତ ତୁମର ନିତିଦିନିଆ କାମ । ଏବେ ସିନା ପ୍ଲାଷ୍ଟିକ୍ କଥା କହିଲ, ପ୍ଲାଷ୍ଟିକ୍ ନ ଥିବାବେଳେ ବି ତୁମେ ଜହ୍ନକୁ ଦେଖି ରାତି ଅନିଦ୍ରା ରହୁଥିଲ ।'' ଧଳାକଇଁ ଓ ନାଲିକଇଁ ଖିଲିଖିଲି ହସି ପାଖୁଡ଼ା ଖୋଲିବାକୁ ଲାଗିଲେ ।

ସୁଦର୍ଶନ ନଗର, ପୁରୀ-୭୫୨୦୦୨

---





## ନବମ ଶତାବ୍ଦୀର ଶିବଲିଙ୍ଗ

ଭାରତୀୟ ଆର୍କୋଲୋଜିକାଲ ସର୍ଭେ ଅଫ୍ ଇଣ୍ଡିଆ (ଏ.ଏସ୍.ଆଇ.) ଦ୍ୱାରା ଖନନ କରାଯାଇ ଭିଏତ୍‌ନାମ୍‌ର ଚାମ୍ ମନ୍ଦିରରୁ ଏକ ଶିବଲିଙ୍ଗ ଦେଖିବାକୁ ମିଳିଛି । ଏହି ଭାସ୍କର୍ଯ୍ୟରୁ ସେତେବେଳକାର ଭାରତ ଓ ଭିଏତ୍‌ନାମ୍ ମଧ୍ୟରେ କିଭଳି ସଭ୍ୟତା ଓ ସଂସ୍କୃତିର ସମନ୍ୱୟ ଘଟିଥିଲା, ତାହା ଜଣାପଡ଼େ । ଏଥିରୁ ନବମ ଶତାବ୍ଦୀ ବେଳକୁ ଭାରତର ଉନ୍ନତ ସ୍ଥାପତ୍ୟର ନମୁନା ଦେଖିବାକୁ ମିଳିଛି ।

ଏହି ମନ୍ଦିରଟି ଭିଏତ୍‌ନାମ୍ ପ୍ରଦେଶର କ୍ୱାଙ୍ଗ୍ ଠାରେ ରହିଛି ଏବଂ ଏହା ରାଜା ୨ୟ ଇନ୍ଦ୍ରବର୍ମନ୍‌ଙ୍କ ରାଜତ୍ୱ ସମୟରେ ନିର୍ମିତ ହୋଇଥିଲା । ପ୍ରତ୍ନତତ୍ତ୍ୱବିତ୍‌ଙ୍କ ମତରେ– ସେହି ମନ୍ଦିର ବେଢ଼ା ମଧ୍ୟରେ ୬ଟି ଶିବଲିଙ୍ଗ ଠାବ କରାଯାଇଛି; ମାତ୍ର ଏହି ଶିବଲିଙ୍ଗଟିର ମହତ୍ତ୍ୱ ଅଧିକ ।

ସଂଗ୍ରହ- ଲୀନା ଦାଶ, ବାଙ୍ଗାଲୋର



ଶ୍ରଦ୍ଧାଞ୍ଜଳି

# ଦୁଇ ଅଭିନେତାଙ୍କ ଦେହାନ୍ତ

ଶ୍ରୀ କାଞ୍ଚନାରାୟଣ ମହାନ୍ତି

ଭାରତୀୟ ଚଳଚ୍ଚିତ୍ରର ଦୁଃସମୟ କୁହାଯାଇପାରେ ଯେ ଯେତେବେଳେ କରୋନା ମହାମାରୀର ଭୟାବହ ସ୍ଥିତି, ସେତେବେଳେ ମାତ୍ର ଗୋଟିଏ ଦିନ ବ୍ୟବଧାନରେ ଦୁଇଜଣ ଖ୍ୟାତନାମା ତାରକା ଆମ ଆଖି ଆଗରୁ ଅପସରି ଗଲେ । ସେମାନେ ହେଲେ ପ୍ରଚୁର ପ୍ରତିଭାସମ୍ପନ୍ନ ଇରଫାନ୍ ଖାଁ ଆଉ ସବୁଜମନର ନାୟକ ଋଷି କପୁର ।

ମୃତ୍ୟୁ ତ ସବୁରି ଭାଗ୍ୟ ଲେଖାଥାଏ । ବଡ଼କଥା, ଇରଫାନ୍ ଖାଁ ମାତ୍ର ୫୩ ବର୍ଷରେ ଏବଂ ଋଷି କପୁର ୬୭ ବର୍ଷରେ ମାରାତ୍ମକ କ୍ୟାନସର ରୋଗର ଶିକାର ହୋଇଥିଲେ । ଏମାନଙ୍କ ପୂର୍ବରୁ ମଧ୍ୟ ଶ୍ରୀଦେବୀ ଇଣ୍ଡଷ୍ଟ୍ରିରୁ ବିଦାୟ ନେଇଛନ୍ତି ।



ଇରଫାନ୍ ଓ ନିମରତ୍ କୌର

'ଲଞ୍ଚବକ୍ସ' ହିନ୍ଦୀ ଛବି ଯେଉଁମାନେ ଦେଖିଥିବେ, ସେଥିରେ ଇରଫାନ୍‌ଙ୍କ ଭଳି ଜଣେ ଉଚ୍ଚମାନର କଳାକାରର ଅଭିନୟ କ'ଣ ଅନ୍ତତଃ ବୁଝିପାରିଥିବେ । ଆଉ ତ ସେଭଳି ଅନେକ ଛବି ରହିଛି, ତେବେ ତାଙ୍କ ସହ ଅଭିନେତ୍ରୀ ଭୂମିକାରେ ଥିଲେ– ନିମରତ୍ କୌର୍ । ସେ ଲୁହକୁ କୋହରେ ପରିଣତ କରି ବାଷ୍ପାକୁଳ କଣ୍ଠରେ ଇରଫାନଙ୍କର ସହ ଏକ ଫଟୋ ଉଠାଇ କହିଥିଲେ–'ଏଭଳି କ୍ଷତି ସୀମା ଟପିଗଲା.... କେତେ ଶୀଘ୍ର କ'ଣ ସବୁ ଘଟିଗଲା... !''

ଋଷି କପୁର ଦୀର୍ଘ ଦୁଇବର୍ଷର ବ୍ଲଡ୍ କ୍ୟାନସର୍ ରୋଗରେ ଚିକିତ୍ସିତ ହେଉଥିଲେ । ଇରଫାନ୍ ୨୦୧୮ ମସିହାରୁ କୋଲନ୍ କ୍ୟାନ୍‌ସରରେ ପୀଡ଼ିତ ଥିଲେ । ମଝିରେ ବିଦେଶରେ ଚିକିତ୍ସିତ ହୋଇ ସୁସ୍ଥ ହୋଇ ଫେରିବା ପରେ ଅଭିନୟ ଆରମ୍ଭ କରିଥିଲେ । ଦୁର୍ଭାଗ୍ୟକୁ ସଂକ୍ରମଣ ହେଲା ଏବଂ ସେ ଲମ୍ବା ଭବିଷ୍ୟତର ଅସୀମ ଯଶ ସାଉଁଟିବା ପୂର୍ବରୁ ଚାଲିଗଲେ । ତାଙ୍କର ଜନ୍ମସ୍ଥାନ ଇନ୍ଦୋର । ଇଚ୍ଛା ଥିଲା, ଜଣେ କ୍ରିକେଟ ଖେଳାଳି ହେବେ– ଭାଗ୍ୟ ତାଙ୍କୁ ନେଇ ହଲିଉଡ୍‌ରେ ପହଞ୍ଚାଇ ଦେଇଥିଲା । ସେ ବଲିଉଡ୍ ଅପେକ୍ଷା ହଲିଉଡ୍ ଛବିରୁ ବେଶ୍ ପ୍ରଶଂସା ଗୋଟେଇ ପାରିଥିଲେ । ସେ ମୋଟ୍ ୮୦ଟି ଛବିରେ ଅଭିନୟ କରିଥିଲେ ।

ତାଙ୍କଦ୍ୱାରା ଅଭିନୀତ ଛବିଗୁଡ଼ିକ ହେଲା– 'ଦି ଲଞ୍ଚବକ୍ସ', ଅଂଗ୍ରେଜି ମିଡ଼ିୟମ୍, ପାନ୍ ସିଂ ତୋମାର, ସ୍ଲମ୍‌ଡଗ୍ ମିଲିନିୟର୍, ନ୍ୟୁୟର୍କ, ଆଇ ଲଭ୍ ୟୁ, ଦି ନେମ୍‌ସେକ୍, ଦି ଆମାଜିଂ ସ୍ପାଇଡର ମ୍ୟାନ୍, ଲାଇଫ୍ ଅଫ୍ ପି., ଜୁରାସିକ୍ ୱାର୍ଲଡ – ଏମିତି ଅନେକ ।



ଇରଫାନ୍ ଖାଁଙ୍କ ପରିବାର

ରାଜକପୁର (ଯେ କି ଫିଲ୍ମ ଜଗତର ପ୍ରବାଦ ପୁରୁଷ ଥିଲେ ତାଙ୍କର ପରିଚୟ ତାଙ୍କ ବୁନିୟାଦ ମୁମ୍ବାଇର ଗୋଡ଼ିମାଟି ଜାଣେ)ଙ୍କର ଋଷି କପୁର ପୁଅ । ରଣଧୀର କପୁର ତାଙ୍କର ଆଉ ଜଣେ ପୁଅ । ମୋଟ ଉପରେ ଅଭିନୟ ସେମାନଙ୍କର ଜୀବନ, ଚଳଚ୍ଚିତ୍ର ସେମାନଙ୍କର ନିଶ୍ୱାସ । ଋଷି କାପୁର ତାଙ୍କର ପ୍ରଥମ ଛବି 'ମେରା ନାମ ଜୋକରରୁ' ପରିଚୟ ଆରମ୍ଭ କରିଥିଲେ । ଶ୍ରୀ ୪୨୦ରେ ଋଷିକପୁର ପିଲାବେଳେ ପ୍ରଥମ ଚଳଚ୍ଚିତ୍ରର ପର୍ଦାକୁ ଆସିଥିଲେ । ଏହି ଛବିରେ ନରଗିସ୍ ତାଙ୍କୁ ଚକୋଲେଟ୍ ଦେଇ ଅଭିନୟ କରାଇଥିଲେ । ସେଥିପାଇଁ ସେ 'ଚକୋଲେଟ୍ ବୟ' ନାମରେ ବେଶ୍ ଜଣାଶୁଣା । 'ବବି' ଚଳଚ୍ଚିତ୍ର ସହିତ ସେ ଅନେକ ଛବିରେ ଅଭିନୟ, ସଫଳତା, ସମ୍ମାନ, ସ୍ତ୍ରୀ ଓ ସନ୍ତାନ ପାଇ ସାରିବା ପରେ ଟିକିଏ ବିଶ୍ରାମ ନେଇ ପୁଣି ତାଙ୍କର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ କରିଥିଲେ । ସୁଟିଂରେ ଥିବା ଅବସରରେ ସେ ଅସୁସ୍ଥ ହେଲେ ଏବଂ ଚାଲିଗଲେ । ତାଙ୍କ ପୁଅଝିଅ ମଧ୍ୟ ଚଳଚ୍ଚିତ୍ର ଦୁନିଆରେ ବେଶ୍ ପ୍ରସିଦ୍ଧି ଅର୍ଜନ କରିଛନ୍ତି ।



ଋଷିକପୁରଙ୍କର ପରିବାର

ପୁଅ ରଣବୀର କପୁର ଏବଂ ଝିଅ ରିଧି କପୁର । ପୁଅ ଜଣେ ସଫଳ ଅଭିନେତା । ଋଷି କପୁର ବହୁ ରୋମାଣ୍ଟିକ୍ ଛବିର ନାୟକ ଭାବେ ଅଭିନୟ କରିଥିଲାବେଳେ ଇରଫାନ ଥିଲେ ଆକ୍ସନ ବାବଦରେ ପ୍ରବୀଣ । ସେ ସାଧାରଣ ମଣିଷର ବାସ୍ତବ ସୂକ୍ଷ୍ମତମ କ୍ରିୟା ପ୍ରତିକ୍ରିୟାର ନିଖୁଣ ଚିତ୍ରକୁ ପ୍ରଦର୍ଶନ କରିବାରେ ଅଦ୍ଭୁତ କ୍ଷମତା ରଖିଥିଲେ । ନାଚଗୀତକୁ ସେ ଏତେ ପସନ୍ଦ କରୁ ନ ଥିଲେ; କିନ୍ତୁ ଅଭିନୟରେ ଯେତେବେଳେ ଯାହା ଆବଶ୍ୟକ, ତାହା ଠିକ୍ ଭାବେ ପୂରଣ କରିଥିଲେ ।




ଋଷି କପୁର ଓ ଇର୍‌ଫାନ୍ ଉଭୟେ 'ଡିଡେ' ଛବିରେ ଏକତ୍ର ଅଭିନୟ କରିଥିଲେ । ଋଷି କପୁରଙ୍କ ଅଭିନୀତ ୪୦ ବର୍ଷର ଅଭିଜ୍ଞ ଜୀବନ ଭିତରେ ୧୫୦ଟି ଛବି ମଧ୍ୟରୁ କେତେକ ହେଲା– ମେରା ନାମ ଜୋକର, ସରଗମ୍, ଅମର ଆକବର ଆନ୍ଥୋନି, ହାମ୍ କିସିସେ କମ୍ ନେହିଁ, କାପୁର ଆଣ୍ଡ ସନ୍‌ସ, ସନମ୍ ରେ, ଷ୍ଟୁଡେଣ୍ଟ ଅଫ୍ ଦି ଇୟର, ହାମ୍ ତୁମ୍, କୁଛ୍ ଖଟି କୁଛ ମିଠି, ରାଜୁ ଚାଚା, ପ୍ରେମ ରୋଗ, ହେନା, ଅମୀରି ଗରିବୀ, ଘର ଘର କି କାହାନି, କୁଲି, ପ୍ରେମ୍‌ରୋଗ, ନସିବ୍, ନାଗିନା, ଚାନ୍ଦିନୀ, ଜନମ ଜନମ, ଦାମିନୀ, ଗୁରୁଦେବ ଇତ୍ୟାଦି ।

ସେମାନଙ୍କର ଅଭାବରେ ବଲିଉଡ୍ ଶିଳ୍ପରେ ବିଷାଦର ଛାୟା ଖେଳିଯାଇଛି । ଅନେକ ଦୁଃଖ ଓ ସମବେଦନା ସହ ସେମାନଙ୍କର ଆତ୍ମା ଶାନ୍ତିଲାଭ କରୁ– ଏତିକି ଈଶ୍ୱରଙ୍କ ନିକଟରେ କାମନା ।

'ଆଶ୍ରମ ଶ୍ରୀବିହାର', କଟକ-୮

(୫୪ ପୃଷ୍ଠାର ଅବଶିଷ୍ଟାଂଶ)

– ପ୍ରଥମ ଶ୍ରେଣୀର କ୍ରିକେଟର୍ ସୁବିମଲ ଗୋସ୍ୱାମୀ (ଚୁନି)ଙ୍କର ୮୨ ବର୍ଷରେ ପରଲୋକ । ୧୯୭୧-୭୨ରେ ସେ ବେଙ୍ଗଲ ରଣଜୀ ଦଳର ଅଧିନାୟକ ଦାୟିତ୍ୱ ତୁଲାଇବା ସହିତ ଦଳକୁ ଫାଇନାଲରେ ପହଞ୍ଚାଇଥିଲେ ।

୨।୫- ଓଡ଼ିଆ ଚଳଚ୍ଚିତ୍ର 'ମା' ନୁହେଁ ପତିତା' ୧୦ମ ଦାଦା ସାହେବ ଫାଲକେ ପୁରସ୍କାରପ୍ରାପ୍ତ ।

୩।୫- ଜାମ୍ମୁ-କାଶ୍ମୀର କୁପଓ୍ୱାଡ଼ା ଜିଲ୍ଲା ଚାଞ୍ଜିମୁଲା ଅଞ୍ଚଳରେ ଆତଙ୍କବାଦୀଙ୍କ ଦ୍ୱାରା ୫ ଜଣ କର୍ଣ୍ଣେଲ ଓ ମେଜରଙ୍କ ସମେତ ୫ ଜଣ ସହିଦ ।

୫।୫- କରୋନା ଲକ୍‌ଡାଉନ୍ ଯୋଗୁଁ ବିଦେଶରେ ଫସି ରହିଥିବା ଭାରତୀୟମାନଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା । ପ୍ରଥମ ପର୍ଯ୍ୟାୟରେ ୧୪,୮୦୦ଙ୍କୁ ଫେରାଇ ଅଣାଯିବ ।

୬।୫- ଦେଶରେ କରୋନା ସଂକ୍ରମିତଙ୍କ ସଂଖ୍ୟା ୫୨ ହଜାର ଅତିକ୍ରମ ।

– ହିଜବୁଲ ମୁଜାହିଦ୍ଦିନ କମାଣ୍ଡର ତଥା କାଶ୍ମୀରମୁଖ୍ୟ ରିୟାଜ ନାଇକୁ ସୁରକ୍ଷାକର୍ମୀଙ୍କ ଦ୍ୱାରା ନିହତ ।

୭।୫- ଆନ୍ଧ୍ରପ୍ରଦେଶର ଭାଇଜାଗସ୍ଥିତ ରାସାୟନିକ କାରଖାନା ଏଲ୍‌ଜି ପଲିମରରେ ବିଷାକ୍ତ ବାଷ୍ପ ନିର୍ଗତ ଯୋଗୁଁ ୧୧ଜଣ ମୃତ ଓ ୧ ହଜାର ଅସୁସ୍ଥ । ୩ଟି ଗାଁର ୫୦୦୦ ପ୍ରଭାବିତ ।

୧୧।୫- ଦେଶର ନାମୀ ମହିଳା ପାରା ଆଥ୍‌ଲେଟ୍ ଦୀପା ମଲ୍ଲିକଙ୍କର ଅବସର ଘୋଷଣା ।

୧୨।୫- ପ୍ରଧାନମନ୍ତ୍ରୀଙ୍କର 'ଆତ୍ମନିର୍ଭର ଭାରତ' ଗଠନ ଆହ୍ୱାନର ପ୍ରାରମ୍ଭରେ ୨୦ ଲକ୍ଷ କୋଟିର ପ୍ୟାକେଜ୍ ଘୋଷଣା ।

୧୩।୫- ଓଡ଼ିଶା କ୍ୟାଡରର ଆଇ.ଏ.ଏସ୍ ଅଫିସର ମନୋଜ ଆହୁଜା କେନ୍ଦ୍ରୀୟ ମାଧ୍ୟମିକ ଶିକ୍ଷାବୋର୍ଡ଼ର ଅଧ୍ୟକ୍ଷ ନିଯୁକ୍ତ ।

୧୪।୫- ମହାରାଷ୍ଟ୍ର ମୁଖ୍ୟମନ୍ତ୍ରୀ ଉଦ୍ଧବ ଠାକ୍‌ରେ ନିର୍ବିରୋଧରେ ବିଧାନ ପରିଷଦକୁ ନିର୍ବାଚିତ ହେଲେ ।

୨୦।୫- ଦେଶର ସ୍ୱାସ୍ଥ୍ୟମନ୍ତ୍ରୀ ଡ. ହର୍ଷବର୍ଦ୍ଧନଙ୍କର ବିଶ୍ୱସ୍ୱାସ୍ଥ୍ୟ ସଂଗଠନର କାର୍ଯ୍ୟନିର୍ବାହୀ ପରିଷଦର ଅଧ୍ୟକ୍ଷ ଭାବେ ଦାୟିତ୍ୱ ଗ୍ରହଣ ।

– ମହାବାତ୍ୟା ଅମ୍ଫନ ଯୋଗୁଁ କଲକାତା ସମେତ ପଶ୍ଚିମବଙ୍ଗର ୧୧ଟି ଜିଲ୍ଲା ପ୍ରଭାବିତ । ୮ ମୃତ, ୧,୩୬୦୦୦ କ୍ଷତି ।

୨୫।୫- ଭାରତୀୟ ହକିର କିମ୍ବଦନ୍ତୀ ପୁରୁଷ ଭାରତୀୟ ହକି ଦଳର ପୂର୍ବତନ ଅଧିନାୟକ ବଲବୀର ସିଂହଙ୍କର ୯୫ ବର୍ଷରେ ପରଲୋକ । ହେଲସିଙ୍କି ଅଲିମ୍ପିକ୍‌ସ୍‌ରେ ଭାରତର ୧୩ଟି ଗୋଲ୍‌ରୁ ସେ ଏକାକି ୯ଟି ଗୋଲ୍ ଦେଇଥିଲେ ।

## ବିଦେଶ ଖବର

୧୧।୫- ଆଫଗାନିସ୍ତାନ କ୍ରିକେଟର୍ ସଫିକୁଲ୍ଲା ସାଫାକ୍‌ଙ୍କୁ ମ୍ୟାଚ୍ ଫିକ୍ସିଂ ଅଭିଯୋଗ ପାଇଁ ୬ ବର୍ଷ କ୍ରିକେଟରୁ ବାସନ୍ଦ କରାଯାଇଛି ।

୧୭।୫- ଇସ୍ରାଏଲ୍ ପ୍ରଧାନମନ୍ତ୍ରୀ ନେତାନ୍ୟାହୁ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ବେନି ଗାଣ୍ଟସଙ୍କ ସହିତ ମିଳିତ ସରକାର ୧୮ ମାସ ପାଇଁ ଗଠନ କରିବେ ।









Swasty Sahasransu Panda
Standard-IV
Rabindra Vidya Niketan, Keonjhar

## ଶବ୍ଦଧନ୍ଦା ମଇ-୨୦୨୦

ଶୁଭସ୍ମିତା

୧ । କାଗଜରେ ବା କାର୍ଡ଼ରେ ଘର କାଟି ଉତ୍ତର ଲେଖନ୍ତୁ ।

୨ । ଶୂନ୍ୟ ଘରେ ଗୋଟିଏ ମାତ୍ର ଅକ୍ଷର ବସାନ୍ତୁ ।

୩ । ଉତ୍ତର କାଗଜରେ ନାମ ଓ ଠିକଣା ଲେଖନ୍ତୁ ।

୪ । ସମ୍ପାଦିକାଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ।

୫ । ଆସନ୍ତା ସଂଖ୍ୟାରେ ଫଳ ପ୍ରକାଶ ପାଇବ ।

୬ । ଉତ୍ତର ପହଞ୍ଚିବାର ଶେଷ ତାରିଖ ୨୨ ।୫ ।୨୦୨୦

୭ । ନିୟମାବଳୀ ପଢ଼ି ଉତ୍ତର ଦିଅନ୍ତୁ ।

| | | | | | |
|---|---|---|---|---|---|
| ୧ | ୨ | ୩ | ❋ | ୪ | ୫ |
| ୬ | | | ୭ | ❋ | |
| | ❋ | ❋ | ୮ | | |
| ❋ | ୯ | | | ୧୦ | ❋ |
| ୧୧ | | ❋ | ୧୨ | | |
| ୧୩ | | | ❋ | ୧୪ | |

### ସୂଚନା

**ବାମରୁ ଡାହାଣ--** ୧ । ମାଘ ମାସର ଏକ ପ୍ରଧାନ ପର୍ବ (୩), ୪ । ଧୂଆଁ (୨), ୬ । ପୂଜା (୪), ୮ । ପାର୍ଶୀ ଓ ଉର୍ଦ୍ଦୁ ଭାଷାର ଏକ ପ୍ରକାର ସଙ୍ଗୀତ (୩), ୯ । ଭାରତର ଦକ୍ଷିଣ ପ୍ରାନ୍ତର ଅନ୍ତରୀପ (୪), ୧୧ । ବଳବାନ୍ (୨), ୧୨ । ଏହାକୁ ଓଲଟପାଲଟ କରି ପକାଇଲେ ଅର୍ଥ ହେବ 'ଶର' (୩), ୧୩ । ସୁନା (୩), ୧୪ । କିରଣ (୨) ।

**ଉପରୁ ତଳ--** ୧ । ମାଉସୀର ସ୍ୱାମୀ (୩), ୨ । ଏକ ଜାତୀୟ ତନ୍ତୁ (୨), ୩ । ଧାତୁ ବିଶେଷ (୨), ୫ । ଏହି ଫୁଲରୁ ମଦ୍ୟ ପ୍ରସ୍ତୁତ ହୁଏ (୩), ୭ । ନଗରବାସୀ (୪), ୯ । ଉଚ୍ଚବଂଶୀୟ (୩), ୧୦ । ପୁଷ୍କରିଣୀ (୩), ୧୧। ଏକ ଧଳା ପକ୍ଷୀ (୨) ।

ନୟାପଲ୍ଲୀ, ଭୁବନେଶ୍ୱର

---

**ଅପ୍ରେଲ ମାସ ଶବ୍ଦଧନ୍ଦାର ଉତ୍ତର (ବାମରୁ ଡାହାଣ)--** ୧ । ଜାଡୁଆଳି, ୫ । ଗିରିଜା, ୬ । ଲବ, ୮ । ବୀଚି, ୧୦ । କଙ୍କ, ୧୧ । କୁଣ୍ଡଳୀ, ୧୨ । ଅର, ୧୩ । ସୁପାରି, ୧୫ । ତ୍ରସୁର, ୧୬ । ପୁଚି ।

**ଉପରୁ ତଳ--** ୧ । ଜାହ୍ନବୀ, ୨ । ଡୁଗି, ୩ । ଆରିଷା, ୪ । ପଲଙ୍କ, ୭ । ବତଳି, ୯ । ଚିକୁର, ୧୦ । କଳୀ, ୧୨ । ଅତ୍ର, ୧୩ । ସୁର, ୧୪ । ରିପୁ ।

---

'କରୋନା'ରେ ତାଲାବନ୍ଦ ପାଳନରେ ଡାକରେ 'ଶବ୍ଦଧନ୍ଦା'ର ଉତ୍ତର ଆମ ପାଖରେ ପହଞ୍ଚିପାରିନାହିଁ । ସେଥିପାଇଁ ଆମେ ଦୁଃଖିତ । ପରବର୍ତ୍ତୀ ସମୟରେ ଆମେ ତାହା ସ୍ଥାନିତ କରିବୁ ବୋଲି ଆଶା ରଖିଛୁ । - ସମ୍ପାଦିକା




## ଓଡ଼ିଶା ଖବର

୧୮।୪- ଓଡ଼ିଆ ସାରସ୍ୱତ ଜଗତର କିମ୍ବଦନ୍ତୀ ପୁରୁଷ ରତ୍ନାକର ଚଇନିଙ୍କର ୭୫ ବର୍ଷରେ ପରଲୋକ ।

– ରାଜ୍ୟରେ ଲକ୍‌ଡାଉନ୍ ଥିବାରୁ ୧୦ମ ଶ୍ରେଣୀର ଛାତ୍ରଛାତ୍ରୀ ଟି.ଭି.ରେ ଦୂରଦର୍ଶନ ଚ୍ୟାନେଲ ଜରିଆରେ ପାଠ ପଢ଼ିବେ ।

୧୯।୪- କରୋନା ଯୋଗୁଁ ସୃଷ୍ଟି ହୋଇଥିବା ସଙ୍କଟଜନକ ପରିସ୍ଥିତିର ମୁକାବିଲା ପାଇଁ ପଞ୍ଚାୟତ ସରପଞ୍ଚମାନଙ୍କୁ ଜିଲ୍ଲାପାଳ କ୍ଷମତା ପ୍ରଦାନ ।

– ମେଘାଳୟ ହାଇକୋର୍ଟର ମୁଖ୍ୟ ବିଚାରପତି ଜଷ୍ଟିସ୍ ମହମ୍ମଦ ରଫିକ୍ ଓଡ଼ିଶା ହାଇକୋର୍ଟର ମୁଖ୍ୟ ବିଚାରପତି ହେବେ ।

୨୬।୪- ଦୀର୍ଘଦିନ ପରେ ଗୁଜୁରାଟ ଓ ମହାରାଷ୍ଟ୍ରରେ ଥିବା ଓଡ଼ିଆ ଶ୍ରମିକମାନଙ୍କୁ ଫେରାଇ ଆଣିବାର ନିଷ୍ପତ୍ତିଗ୍ରହଣ ।

– ଓଡ଼ିଆ ନାଟକର ନୂତନ ଧାରା ପ୍ରବର୍ତ୍ତକ ଇଂ. ବିଜୟ ମିଶ୍ରଙ୍କର ୮୩ ବର୍ଷରେ ପରଲୋକ । ତାଙ୍କର ଅନନ୍ୟ ସାଧନା ପାଇଁ ସେ ଅଜସ୍ର ସମ୍ମାନ ଓ ପୁରସ୍କାର ପାଇଥିଲେ ।

୨୭।୪- ହରିୟାଣା ପାହ୍ୟାର ବରିଷ୍ଠ ଆଇ.ଏ.ଏସ୍ ଅଧିକାରୀ ସଞ୍ଜୟ କୋଠାରିଙ୍କର କେନ୍ଦ୍ରୀୟ ଭିଜିଲାନ୍ସ କମିଶନର (ସିଭିସି) ଭାବେ କାର୍ଯ୍ୟଭାର ଗ୍ରହଣ ।

୪ ।୫- ପୁରୀରେ ରଥ ନିର୍ମାଣ କାର୍ଯ୍ୟ ଆରମ୍ଭ ପାଇଁ ଶ୍ରୀମନ୍ଦିର ପରିଚାଳନା କମିଟିର ସୁପାରିଶ ।

୧୦।୫- ପଶ୍ଚିମ ଓଡ଼ିଶା ବିକାଶ ପରିଷଦର ଅଧ୍ୟକ୍ଷ ତଥା ବଜରଙ୍ଗ ଦଳର ପୂର୍ବତନ ରାଷ୍ଟ୍ରୀୟ ଅଧ୍ୟକ୍ଷ ସୁବାସ ଚୌହାନଙ୍କର ୫୪ ବର୍ଷରେ ପରଲୋକ ।

୧୨।୫- ଭୁବନେଶ୍ୱର-ନୂଆଦିଲ୍ଲୀ ଏକ ସ୍ୱତନ୍ତ୍ର ଟ୍ରେନର ଦୈନିକ ଯାତ୍ରା ଆରମ୍ଭ ।

୧୪ ।୫- ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ଗାନ୍ଧୀବାଦୀ ତଥା ପ୍ରାକ୍ତନ ସାଂସଦ ପଦ୍ମଶ୍ରୀ ଭବାନୀ ଚରଣ ପଟ୍ଟନାୟକଙ୍କର ୯୯ ବର୍ଷରେ ପରଲୋକ । ସେ ୩ ଥର ରାଜ୍ୟସଭାକୁ ନିର୍ବାଚିତ ହୋଇଥିଲେ ।

୧୬।୫- ଓଡ଼ିଆ ଭାଷାର ପ୍ରଚାରକ ଓ ଉତ୍କଳ ସମ୍ମିଳନୀର ପୂର୍ବତନ ସଂପାଦକ ଶ୍ରୀଯୁକ୍ତ ଅଭୟ ସାମନ୍ତରାୟଙ୍କ ପରଲୋକ ।

୨୦ ।୫- ମହାବାତ୍ୟା ଅମ୍ପନ ଯୋଗୁଁ ଓଡ଼ିଶାର ଚାରୋଟି ଜିଲ୍ଲାରେ ବ୍ୟାପକ କ୍ଷୟକ୍ଷତି । ପାରାଦ୍ୱୀପରେ ୩୦୩ ମି.ମି. ବର୍ଷା ।

## ଭାରତ ଖବର

୨୦ ।୪- ପଳାତକ ମଦ ବ୍ୟବସାୟୀ ତଥା କିଙ୍ଗ ଫିଶର ବିମାନ କମ୍ପାନୀର ପୂର୍ବତନ ମୁଖ୍ୟ ବିଜୟ ମାଲ୍ୟାଙ୍କର ଭାରତକୁ ପ୍ରତ୍ୟର୍ପଣବିରୋଧୀ ଆବେଦନକୁ ବ୍ରିଟେନ୍ ହାଇକୋର୍ଟର ପ୍ରତ୍ୟାଖ୍ୟାନ ।

୨୧ ।୪- ମଧ୍ୟପ୍ରଦେଶରେ ନୂତନ ମନ୍ତ୍ରିମଣ୍ଡଳ ଗଠିତ । ୫ଜଣ କ୍ୟାବିନେଟ୍ ମନ୍ତ୍ରୀ ଭାବେ ଗୃହୀତ ।

୨୫।୪- ଚଳିତ ବର୍ଷ ଉଚ୍ଚଶିକ୍ଷା କ୍ଷେତ୍ରରେ ନୀତି ନିର୍ଘଣ୍ଟର ପରିବର୍ତ୍ତନ । ଶିକ୍ଷାବର୍ଷ ନିୟମିତ ଜୁଲାଇରୁ ଆରମ୍ଭ ହେଉଥିଲାବେଳେ ଚଳିତ ବର୍ଷ ସେପ୍ଟେମ୍ବରରୁ ଆରମ୍ଭ ହେବାର ସମ୍ଭାବନା ।

୨୯।୪- ବଲିଉଡ୍‌ର ପ୍ରଖ୍ୟାତ ଅଭିନେତା ଇରଫାନ ଖାନ୍‌ଙ୍କର ୫୩ ବର୍ଷରେ ପରଲୋକ । ୧୯୮୮ରେ 'ସଲାମ ବମ୍ବେ'ରେ ସେ ଚଳଚ୍ଚିତ୍ର ଜୀବନ ଆରମ୍ଭ କରିଥିଲେ । ବଲିଉଡ୍‌ରେ ପ୍ରାୟ ୫୦ଟି ଚଳଚ୍ଚିତ୍ରରେ ସେ ଅଭିନୟ ଦକ୍ଷତା ପ୍ରତିପାଦିତ କରିଛନ୍ତି ।

୩୦।୪- କେନ୍ଦ୍ର ସରକାରଙ୍କର କାତାର, ବାହାରିନ୍, ଅଷ୍ଟ୍ରିଆ, ସ୍ଲୋଭେନିଆରେ ୪ଜଣ ନୂଆ ରାଷ୍ଟ୍ରଦୂତ ନିଯୁକ୍ତ ।

(ଅବଶିଷ୍ଟାଂଶ ୫୨ ପୃଷ୍ଠାରେ)

EDITED, PRINTED & PUBLISHED BY ANASUYA NANDA AT SANSAR PRESS, TALATELENGA BAZAR, CUTTACK-753009, Ph : 2420075, 2422597